ଅତିକ୍ରାନ୍ତ ସମୟ: ଏକ ରୋମନ୍ଥନ
ଲେଖକ : ଗୋବର୍ଦ୍ଧନ ଦୋରା
: ମୋବାଇଲ: ୯୪୩୭୦୩୮୩୩୯
ପ୍ରକାଶକ : ଲାବଣ୍ୟବତି ଦୋରା
ଏଲ୍-୧୮୪, ଫକୀରମୋହନ ନଗର
ହାଉସିଂବୋର୍ଡ କଲୋନୀ ବରମୁଣ୍ଡା,
ଭୁବନେଶ୍ୱରର-୭୫୧୦୦୩
ଦୂରଭାଷ: ୬୩୭୧୩୮୪୦୫୮
ପ୍ରଚ୍ଛଦ ଫଟୋ : ନାର୍ଗାଜୁନ ବେଶ
ପ୍ରଥମ ସଂସ୍କରଣ : ୨୦୨୨
ମୂଲ୍ୟ : ୧୫୦ ଟଙ୍କା

Atikranta Samaya:
Eka Romanthan
Writer : Gobardhan Dora
Mobile: 9437038339
Published by : Labanyabati Dora
L-184, Fakirmohan Nagar
Housing Board Colony,
Baramunda,
Bhubaneswar-751003
Mobile: 6371384058
First Edition : 2022
Cover : Nagarjuna Besha
Price : Rs. 150/

# ଉତ୍ସର୍ଗ



ପ୍ରାକ୍ତନ ମୁଖ୍ୟଯନ୍ତ୍ରୀ ଶ୍ରୀ କୁଳମଣି ବିଶ୍ୱାଳ (ଜନ୍ମ: ୧୯୪୨)
ପୂର୍ତ୍ତ ବିଭାଗ
ଆପଣଙ୍କର ନିଚ୍ଛକ ସ୍ନେହ ସର୍ବଦା ମନରେ ଆସେ।

# ସୂଚୀ





# ପ୍ରାଗ୍ ଭାଷ

କ୍ଷୟତ ହେଲାଣି ଏ ପିଣ୍ଡ
କ୍ଷ୍ୟାଳ ଏ ଜଞ୍ଜାଳର ଦଣ୍ଡ

*ନୀଳାଦ୍ରୀଶ ଚଉତିଷା, ଭଞ୍ଜକବି*

ଉପକ୍ରମଣିକା :

ସମୟ ଚାଲିଛି ଅବିରାମ ଗତିରେ। ବାଲ୍ୟ, କିଶୋର, ଯୁବକ ଓ ପୌଢ଼ ଅବସ୍ଥାକୁ ଅତିକ୍ରମ କରି ବର୍ତ୍ତମାନ ବୃଦ୍ଧାବସ୍ଥା। ଆମ ଜୀବନରେ ଆମେ ବହୁତ ଦେଖିଲୁ। ୧୯୬୦ ମସିହା ପର୍ଯ୍ୟନ୍ତ ସେହି ବ୍ରିଟିସ ସମୟର ପୁରୁଣାକାଳିଆ ଗାଉଁଲି ରୀତି, ତା' ପରେ ବିଜ୍ଞାନ ଯୁଗର ଅଭ୍ୟୁଦୟ। ବସ୍, ଟ୍ରକ୍, ଜିପ୍ ରେଡିଓ, ଟ୍ରାଜିଷ୍ଟର ଆସିଲା। ଆଗରୁ ଟେଲିଗ୍ରାଫ ଥିଲା। ୧୯୮୦ ବେଳକୁ ଟେଲିଭିଜନ ଦେଖିଲୁ। ଅନେକ ପ୍ରକାର ଆଧୁନିକ ଜୀବନର ବିଳାସବ୍ୟସନ ବାହାରିଲା। ସିନେମା ଦେଖିଥିଲି କଳା ଓ ଧଳାରେ ୧୯୫୫ ମସିହାରେ। ତା'ପରେ ହେଲା ରଙ୍ଗିନ। ବିଂଶ ଶତାବ୍ଦୀର ଶେଷ ବେଳକୁ ଟ୍ରଙ୍କ କଲର ବହୁଳତା। ଟେଲିଫୋନ ଅଫିସ୍ ନଯାଇ ହାଟ ବଜାରରୁ କଥା ହେବାକୁ ସୁବିଧା ମିଳିଲା। ଏକ ବିଂଶ ଶତାବ୍ଦୀର ଆରମ୍ଭରେ ଦେଖିଲୁ ମୋବାଇଲ, ସବୁ ପ୍ରକାର ଆଧୁନିକତାର ଶୀର୍ଷରେ।

ଏହା ବାଦ୍ ଗାଡି ମଟର୍ ମଟରସାଇଲେ ଅଟୋ ରିକ୍ସା, ସ୍କୁଟର ଡାକ୍ତରଖାନାର ବିଭିନ୍ନ ପ୍ରକାର ମେସିନ ଇତ୍ୟାଦି ବାହାରିଲା। ଆମ ଜୀବନରେ ହିଁ ଆମେ ପୁରୁଣା ଯୁଗ ଏବଂ ଅତ୍ୟାଧୁନିକ ଯୁଗକୁ ଦେଖିଲୁ। ଆମ ପିଲାବେଳେ କାଁଭାଁ ସାଇକେଲ ଚଢୁଥିଲେ। ବସ୍ ଚଳାଚଳ ବହୁତ କମ୍, ସରକାରୀ ବାବୁମାନେ ଜିପ୍ ରେ ଯାଉଥିଲେ। ରୋଗର ଚିକିତ୍ସା ପାଇଁ ସେମିତି କିଛି ଔଷଧ ଇଞ୍ଜେକ୍‌ସନ୍ ନାହିଁ। ୧୯୫୮ ମସିହାରେ କଟକ ମେଡିକାଲ କଲେଜରେ ଆମେ ଦେଖିଲୁ ଏକ୍ସ-ରେ

ରେ ଦେହ ଭିତର ଫଟୋ ଉଠାଇବା। ସେ ସମୟରେ ଡକ୍ଟର ଗୋଲଖ ମହାନ୍ତି ଥିଲେ ରେଡିଓଲୋଜିଷ୍ଟ। ୧୯୬୦ରେ ମୋ ଦେଖିବାରେ ଟ୍ରେନ୍ ଚାଲୁଥିଲା ଷ୍ଟିମ୍ ଇଞ୍ଜିନ୍ ରେ ତା' ପରେ ଆସିଲା ଡିଜେଲ ଇଞ୍ଜିନ ଏବଂ ଏବେ ଟ୍ରେନ୍ ଚାଲୁଛି ଇଲେକ୍ଟ୍ରିରେ। ନାରୋ ଗଜ, ମିଟର ଗଜ ବଦଳି ହେଲାଣି ବ୍ରଡଗଜ। ରାଜପଥ ମଧ୍ୟ ସିଙ୍ଗଲ ଲେନ୍ ରୁ ବଢ଼ି ଦୁଇ ଲେନ୍, ୪ ଲେନ୍ ଏବଂ ୬ ଲେନ୍ ବିଶିଷ୍ଟ ହେଲାଣି। ବହି ମୁଦ୍ରଣ ଶିଳ୍ପ ଉନ୍ନତି ହୋଇ କମ୍ପ୍ୟୁଟରରେ ଛପା ହଉଛି।

ଆଗେ ରଥଯାତ୍ରାରେ ପୁରୀ ଗଲେ ମହାମାରିରେ ପଡୁଥିଲେ। ବସନ୍ତ ରୋଗରେ ବହୁତ ମରିପଡୁଥିଲେ। ଏବେ ଟିକା ଆସିବା ପରେ ମୃତ୍ୟୁ ସଂଖ୍ୟା ଶୂନରେ ପହଞ୍ଚିଛି। ଗାଁମାନଙ୍କରେ ଧାନ ଫସଲ ମାଣକେ ୪୦ ନଉତି ହେଉଥିଲା ବେଳେ ଏବେ ୮୦ ରୁ ୧୦୦ ନଉତି। ଲୋକମାନେ ଉପାସରେ ରହୁଥିଲେ। ଗାଁର ୧୨ ପଣ ଲୋକ ହଳିଆ ମୂଲିଆ ଲାଗୁଥିଲେ। ଏବେ ସହି ସଂଖ୍ୟା ଶୂନ୍ ରେ ପହଞ୍ଚିଛି। ଏମିତି ସବୁକ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ହୋଇଛି। ବର୍ତ୍ତମାନ ମୋର ପରିଣତ ବୟସରେ ମୁଁ ଲକ୍ଷ୍ୟ କରୁଛି ଏହିସବୁ ବିରାଟ ପରିବର୍ତ୍ତନ। ବିଜ୍ଞାନର ଗତି ଅବିରାମ। ଏହାପରେ ପରେ କି ସବୁ ପରିବର୍ତ୍ତନ ଆଗକୁ ଆସିବ ଲକ୍ଷ୍ୟ କରିବାର କଥା।

ଆମ ଗାଁରେ, ସମାଜରେ ଅବସ୍ଥା କ'ଣ ଥିଲା ୭୦ ବର୍ଷ ତଳେ ସେ ସବୁର ସ୍ମୃତିକୁ ରୋମନ୍ଥନ କରି ଲେଖୁଛି ପାଠକମାନଙ୍କ ପାଇଁ କିଛି ସନ୍ଦେଶ।



# ଆମ ଗାଁ ବଡ଼ଗୋରଡ଼ା

ଗାଁ ବିଷୟରେ ପ୍ରକାଶିତ ମୋର ଅନ୍ୟ ଦୁଇଟି ବହିରେ କିଛି ଉଲ୍ଲେଖ କରିଛି। ଏବେ କରୁଛି ଅନ୍ୟ କିଛି : ଆମ ପିଲାବେଳର କଥା ଅନ୍ତତଃ ୧୯୪୬ ମସିହା ପାଖାପାଖି।

ବିଷୁବ ସଂକ୍ରାନ୍ତିକୁ ପଣା ସଂକ୍ରାନ୍ତି କହନ୍ତି। ଏ ଦିନ ଶିଖରପୁରରୁ ଜ୍ୟୋତିଷ ଆସିବେ। ବାଉତି ଠାକୁରାଣୀଙ୍କ ମଣ୍ଡପକୁ ଗାଁର ଅନେକ ଲୋକ ଆସିବେ। ପଣ୍ଡିତେ ବର୍ଷର ପାଳକ, ଶସ୍ୟ ଉପରେ ଟିପ୍ପଣୀ ଦେବେ। ଗାଁ ମାଳୀ ଆନନ୍ଦ ମହାପାତ୍ରେ ସଂଧ୍ୟାରେ ସମସ୍ତଙ୍କ ଘରେ ଗୁଡ଼ ପଣା ଗିଲାସେ ଲେଖାଏଁ ଦେବେ।

ଧନୁମାସରେ ସଂକ୍ରାନ୍ତି ଦିନ ଭରତ ଭଙ୍ଗ ଜମି ଖାଉଥିବାରୁ ଗାଁରେ ମୁଁଆ ବାଣ୍ଟ କରନ୍ତି। ସଞ୍ଜବେଳେ ସବୁଦିନେ ମାଳୀ ଆନନ୍ଦ ମହାପାତ୍ର ସମସ୍ତଙ୍କ ଘରକୁ ଯାଇ ଚାଉଳ ମାଗନ୍ତି। ବାଉତୀ ଠାକୁରାଣୀଙ୍କ ଭୋଗ ପାଇଁ ସକାଳ ଓଳା ଅନ୍ନ ରୋଷେଇ ହୁଏ, ତରକାରୀ ହୁଏ। ରାତ୍ରିରେ ଶୁଖିଲା ଭୋଗ ଉଖୁଡ଼ା ଠାକୁରାଣୀଙ୍କୁ ଦିଆଯାଏ। ୧୯୪୦-୪୫ରେ ମୋ ଦେଖିବାରେ ଗୋଟିଏ ଚାଳ ଘରେ ଠାକୁରାଣୀ ପୂଜା ପାଉଥିଲେ। ମୂର୍ତ୍ତୀ ନ ଥିଲା। ପଥରରେ ଚୁଆ ଓ ଅନ୍ୟାନ୍ୟ ରଂଗ ଆଣି ଲଗାଇ ପୂଜା ହେଉଥିଲା। ୧୯୫୮-୫୯ ବେଳକୁ ନୂଆ ଛାତ ଘର ହେଲା। ନୂଆ ମୂର୍ତ୍ତୀ ମଧ୍ୟ ତିଆରି ହୋଇଛି। ବାଉତି ଠାକୁରାଣୀଙ୍କୁ ଗ୍ରାମଦେବତୀ କହନ୍ତି। ମାଳୀ ପୂଜା କରିବା ପାଇଁ ଜମି ପାଇଛନ୍ତି।

ଗାଁରେ ଅଛି ଦୁଇଟି ଭାଗବତ ଘର। ପଶ୍ଚିମ ପଟ ଭାଗବତ ଘରେ ପୋଥିଥିଲା। ମୁଁ ଦେଖିଛି ଲୋକେ ବସିକରି ଭାଗବତ ପାଠ କରିବାଟା। ୧୯୫୩ରେ ଗାଁ ପୋଡ଼ିରେ ଭାଗବତ ଘର ପୋଡ଼ିଗଲା। ୧୯୫୫-୫୬ ବେଳକୁ ପୁଣି କାଠ ଆଣି ଚାଳଘର

କଲେ। ଏବେ ପୁରା ପକ୍କାଘର। ପୂର୍ବ ପଟ ଭାଗବତ ଘରେ ମଧ୍ୟ ଭାଗବତ ପୂଜା ପାଉଥିଲେ, ପୋଥି ଥିଲା। ୧୯୪୮ରେ ଗାଁରେ ପ୍ରତିଷ୍ଠିତ ହୋଇଥିବା ଗାଁ ଲାଇବ୍ରେରୀର ଦୁଇଟି ଆଲମିରା, ଟେବୁଲ, ଲମ୍ବା ବେଞ୍ଚ ଥିଲା। ୧୯୫୩ ଘର ପୋଡ଼ିରେ ଆଲମିରା ଦୁଇଟିକୁ ସାହୁକାର ଘର ମଣ୍ଡପକୁ ନେଇ ଯିବାରେ ବହି ରକ୍ଷା ପାଇଲା। ମାତ୍ର ଅନ୍ୟ ସବୁ ଭସ୍ମ ହୋଇଗଲା। ଏବେ ଏଇ ଭାଗବତ ଘର ମଧ୍ୟ ପକ୍କା ହୋଇଅଛି। ଆମ ଗାଁ ପାଖରେ ଯାଇଥିବା ଶରଣକୁଳ-ଗୋଡିପଡା ରାସ୍ତାକୁ ଲୋକେ ଯିବା ପାଇଁ ୧୯୪୨-୪୩ରେ ଗୋଟିଏ ସଂଯୋଗୀ ରାସ୍ତା କଲେ। ପାଣି ଯିବା ଆସିବା ପାଇଁ ଇଟାରେ ଖୁମ୍ବ କରାଇ ତା'ଉପରେ ବାଉଁଶ ଚାଞ୍ଚ ପକାଇଲେ। ଯାହା ଫଳରେ ଗାଁକୁ ସବୁ ଦିନିଆ ରାସ୍ତା ଖୋଲିଲା। ତା ପୂର୍ବରୁ ଗାଁର ଲୋକମାନେ ପୁରା ଗହିର ଭିତରେ ରହୁଥିଲେ। ହିଡରେ ଯାଇ ରୋଡ଼ ଉପରକୁ ଆସୁଥିଲେ।

ଗାଁର ପୂର୍ବପଟରେ ଗାଁ ଦାଣ୍ଡରୁ ଗୋଟିଏ ଦଣ୍ଡା ଥିଲା। ବର୍ଷାଦିନେ ପାଣି। ମୁଁ ଦେଖିଛି ସାଉକାର ଘର ଧାନ ବଜରାରେ ଦଣ୍ଡା ଦେଇ ନାହାକ ତୋଟା ସଡ଼କ ପାଖରେ ପହଞ୍ଚୁଥିଲା। ଗାଁକୁ ସଂଯୋଗୀ ରାସ୍ତା ହେଲା ପରେ ସବୁ ଯିବା ଆସିବା ସହଜ ହେଲା। ମୁଁ ୧୯୮୭ ରୁ ୧୯୯୨ ପର୍ଯ୍ୟନ୍ତ ନୟାଗଡ଼ P.W.D. S.D.O. ଥିଲି। ସେ ସମୟରେ ଗାଁ ବାଲା ମତେ କହିଲେ ୧/୪ କି.ମି ଲମ୍ବା ସଂଯୋଗୀ ରାସ୍ତାକୁ ଯେପରି ମେଟେଲିଂ କରିଦିଅ। ସରକାରୀ ପଇସାରେ କରିବା ସମ୍ଭବ ନୁହେଁ। ମୁଁ ହାତରୁ ଏତେ ଟଙ୍କା ଦେବା ମଧ୍ୟ ଅସମ୍ଭବ। ସେ ଯାହା ହେଉ ଅଧା ରାସ୍ତା ପାଇଁ ମୋ ହାତରୁ ମେଂଟାଲ କିଣି ଦେଇଥିଲି। ହାତରେ ରୋଲର ଅଛି। ତେଣୁ ଅଧାରାସ୍ତା ମେଟେଲିଂ କରି ଦେଇଥିଲି।

ସର୍ବରାକାର କ୍ଷେତ୍ରମୋହନ ମହାପାତ୍ରଙ୍କୁ ଲୋକେ ବହୁତ ମାନୁଥିଲେ। ଶିବରାତ୍ର ବେଳକୁ ଦେଉଳରୁ ଖବର ଆସିଲେ ସେ ଗାଁରୁ କିଛି ଲୋକଙ୍କୁ ପଠାନ୍ତି। ଠାକୁରଙ୍କର ଚଉଦୋଳ କାନ୍ଧେଇବା ପାଇଁ ଆଗରୁ ବେଠି ଥିଲା। ଏବେ କିଛି ପାରିଶ୍ରମିକ ମିଳୁଛି।

ମୁଁ ପ୍ରାୟ ୧୮ ବର୍ଷ କାଳ ଗାଁରେ ରହିଛି। ଦୋଳ ପୂର୍ଣ୍ଣିମାରେ ଗାଁରେ ନୂଆ ହଳିଆ, ପୋଡୁଅ, ମାହାର ଲାଗନ୍ତି। ହୋଲି ଉତ୍ସବ ଗାଁରେ ନାହିଁ। ହୋଲିରେ ରଙ୍ଗ ଲଗାଇବା ମୁଁ କଟକରେ ପ୍ରଥମେ ଦେଖିଲି ୧୯୫୭ ମସିହାରେ।

ଦୀପାବଳି ଅମାବାସ୍ୟାରେ ଘରେ ଘରେ ପୂଜା ହୁଏ। ବଡ଼ ବଡ଼ିଆଙ୍କୁ ଆଖୁ/ କାଉଁରିଆ କାଠିରେ ଘିଅ ବଳିତା ଜାଳି ପୂର୍ବପୁରୁଷଙ୍କୁ ଡାକନ୍ତି। ମାତ୍ର ସେଇ ୧୯୫୭ରେ ଦେଖିଲି କଟକରେ ବାଣ ପୋଡ଼ା ଉତ୍ସବ। ଗାଁର ପରିବେଶ କି ଶାନ୍ତ!

ଆମ ଆଡ଼େ ଶରଣକୁଳର ଶିବରାତ୍ର (ଜାଗର ଉତ୍ସବ) ବଡ଼। ସେତେବେଳେ ନିଜ ନିଜର କୁଟୁମ୍ବ, ସଂଗାତ ବନ୍ଧୁ ସାନମାନଙ୍କୁ ଯାତ୍ରା ଖରଚ ପାଇଁ ଟଙ୍କେ, ଆଠଅଣା ଦିଅନ୍ତି। ଶରଣକୁଳ ଜାଗର ଯାତ୍ରା ପ୍ରାୟ ୧୫/୨୦ ଦିନ ଚାଲେ। ଏହି ଯାତ୍ରାରୁ ଲୋକେ କିଣନ୍ତି କଂସାରି / ଖରୁଡ଼ାମାନଙ୍କଠାରୁ ଝିଅମାନଙ୍କୁ ସଜଦେବା ଲାଗି କଂସା, ଗିନା, ତାଟିଆ, ଡ଼ାଳ, ଗିଲାସ ପ୍ରଭୃତି।

ଶରଣକୁଳରେ ଜାଗର ବାଦ ହୁଏ ଯମ ଦୁତୀୟା, ଶୀତଳଷଷ୍ଠୀ ଯାତ୍ରା। ଦୋକାନ ବଜାର ଖୋଲେ। ଆମେ ଯାଉ କିଣି ଖାଇବାକୁ। ଚାଉଳ, ଚିନି କିମ୍ବା ଚାଉଳ ଗୁଡ଼ରେ ହୁଏ ସାକର, ଖୁସିଖଜା, ଚିନି ସିରାରେ ହୁଏ ଘୋଡ଼ା, ହାତୀ ଇତ୍ୟାଦି। ଗାଁରେ ଆମ ସମୟରେ ବିଲାତିଆଳୁ, ବନ୍ଧାକୋବି ମିଳେନା। ଆମେ ଆଣୁ ଶରଣକୁଳରୁ ଶିବରାତ୍ର ସମୟରେ। ଗଞ୍ଜାମରୁ ଆସେ କନ୍ତାରି ଆଖୁ। ଆଖୁଚୋପା ବଡ଼ କଅଁଳ।

ଗୋଡ଼ିପଡ଼ାରେ ଅଛନ୍ତି ଲଡୁକେଶର ମହାଦେବ। ଏଠି ହେଉଥିଲା ଦୋଳପୂର୍ଣ୍ଣିମା ଦିନ ଯାତ୍ରା। ଏବେ ଅନେକ ବର୍ଷ ହେଲା ଦୋଳ ପୂର୍ଣ୍ଣିମା ଯାତ୍ରା ବନ୍ଦ ଥିଲା ଗୋଡ଼ିପଡ଼ାରେ। ଏବେ ଶୁଣିଲି କିଛି ବର୍ଷ ହେଲା ପୁରୁଣା ପିଢ଼ିର ଯାତ୍ରା ଆରମ୍ଭ ହୋଇଛି।

ଶରଣରକୁଳରେ ହୁଏ ଲଡୁବାବାଙ୍କର ୧୪ ପାଳି ଯାତ୍ରାଙ୍ଗି। ମୋ ମା ଏହି ଯାତ୍ରାଙ୍ଗୀ ପାଳିଥିବା କଥା ମୋର ମନେଅଛି। ବାପା ମଧ୍ୟ କରିଥିଲେ।

ଲଡୁବାବାଙ୍କର ବହୁତ ଜମିବାଡ଼ି ଶରଣକୁଳରେ ଥିବା ଗୁଡ଼ିଆମାନେ ଜମି ଭୋଗ କରନ୍ତି। ଠାକୁରଙ୍କର ପିଠାପଣା କରିବା ପାଇଁ ମୋ ବାପା ୧୦ମାଣ (୨୧/୨ଏକର) ଭାଗ ଆଣି ଚାଷ କରନ୍ତି। ଇଜରାରେ ବର୍ଷକୁ ୨ ଶଗଡ଼ ଧାନ। ବାପାଙ୍କ ଅନ୍ତେ ଏବେ ମଧ୍ୟ ଏହି ଗୁଡ଼ିଆ ଜମି ଆମ ପରିବାର ଚାଷ କରୁଛନ୍ତି। ଆମ ପରିବାର ଏହି ଜମିର ଦେଖାଶୁଣା କରି ତାର ପ୍ରାପ୍ୟ ଗୁଡ଼ିଆଙ୍କୁ ଦେଉଛି। ଆମ ଗାଁରେ ଠାକୁରଙ୍କର ଅନେକ ଜମି। ଗୁଡିଆ, ବ୍ରାହ୍ମଣ ସେବାୟତ, ମାଳୀସେବାୟତଙ୍କ ଜମି ଲୋକମାନେ ଚାଷ କରୁଛନ୍ତି। ଆମ ଗାଁର ଗଉଡ଼ମାନେ ଠାକୁରଙ୍କ ଜମି ଖାଉଛନ୍ତି ସବୁଦିନ ଠାକୁରଙ୍କୁ ଛେନା ଲାଗି କରିବା ପାଇଁ।

ଗାଁ ସର୍ବରାକାର ଥିଲେ କ୍ଷେତ୍ର ମୋହନ ମହାପାତ୍ର। କ୍ଷେତ୍ରମୋହନଙ୍କ ମୂଳ ସାଙ୍ଗିଆ ପରିଡା। ନୟାଗଡ଼ ରାଜା ତାଙ୍କୁ ମହାପାତ୍ର ସମ୍ମାନ ଦେବାରୁ ସେ ପରିଡା ବଦଳରେ ମହାପାତ୍ର ଲେଖୁଛନ୍ତି। ତାଙ୍କ ପୁଅମାନେ ମଧ୍ୟ ମହାପାତ୍ର ସାଙ୍ଗିଆ ବ୍ୟବହାର କରୁଛନ୍ତି। କ୍ଷେତ୍ରମୋହନଙ୍କର ଗାଁରେ ଭଲ ଓଜନ ଥିଲା। ଲୋକେ ତାଙ୍କୁ

ମାନୁଥିଲେ। ମୋ ବାପା ଯେତେବେଳେ କଦମମାଳରେ ଘର କରିବାକୁ ଚାହିଁଲେ, ସେତେବେଳେ ଦାଙ୍ଗଡୁବିମ୍ବୁ ପରିବାରର ମଦନ ଦୋରାଙ୍କୁ ଆମ ବାଙ୍କି କିଆରି ଦେଇ ତା'ର କଦମମାଳ ଜମି ବଦଳ ପ୍ରସ୍ତାବ ଦେଲୁ। କ୍ଷେତ୍ରମୋହନ କହିବାରୁ ମଦନ ଏହି ୩୦ ଡେସିମିଲ ଜମି ଦେବାରୁ ଆମେ ଘର କରି ଗାଁରୁ ଏହି ନୂଆ ଯାଗାକୁ ଉଠି ଆସିଲୁ। ଏଥିପାଇଁ କ୍ଷେତ୍ରମୋହନଙ୍କ ପାଖରେ ଆମ ପରିବାର କୃତଜ୍ଞ। ଗାଁର କଲେଜ ପଢୁଆ ପିଲାଏ ଲାଇବ୍ରେରୀ କଲେ ୧୯୪୮ ମସିହାରେ। ସେ ଦେଲେ ଅକୁଣ୍ଠ ସମର୍ଥନ। ଗାଁରେ ଲାଇବ୍ରେରୀ ହେଲା। ସେ ଆଙ୍ଗସିଙ୍ଗି ବାବାଜୀ ବୃନ୍ଦାବନ ଦାସଙ୍କୁ କହିବାରୁ ସେ ଗୋଟେ ବଡ଼ ଆଲମିରା ଦେଲେ। ଆଗରୁ କାରୁକାର୍ଯ୍ୟହୀନ ଗୋଟିଏ ସାନ ଆଲମିରା ଆମ୍ବ କାଠରେ ତିଆରି କରିଥିଲେ ଗାଁ ବିନ୍ଧାଣୀ ହଜାରି ସ୍ୱାଇଁ। ବଡ଼ ଆଲମିରାରେ ଲେଖାଯାଇଥିଲା "ବୃନ୍ଦାବନ ଦାଶ ପ୍ରଦତ୍ତ"।

୧୯୧୯ ମସିହାରେ ନୟାଗଡ଼ରେ ଦୁର୍ଭିକ୍ଷ ପଡ଼ିଥିଲା। ଏଇଟା ଥିଲା ୧୩୨୬ ସାଲ। ତେଣୁ ଏହାକୁ ଛବିଶସାଲ ମହର୍ଗ କହନ୍ତି। ଲୋକଙ୍କୁ କାମ ଦେବା ଉଦ୍ଦେଶ୍ୟରେ ସାଉକାର ଘର ଗୋଟିଏ ବଡ଼ ପୋଖରୀ ଖୋଳିଲେ। ୪ ଏକର (୧୬ମାଣ)ର ପୋଖରୀ। ପୋଖରୀ ଖୋଳିବା ଗୋଟିଏ କୀର୍ତ୍ତି। ଏହି ସମୟରେ ଜନ୍ମ ହେଲେ ଲୋକନାଥ ପ୍ରଧାନଙ୍କ ଦ୍ୱିତୀୟ ପୁତ୍ର। ତାଙ୍କୁ ନାଁ ଦେଲେ କୀର୍ତ୍ତିଚନ୍ଦ୍ର। ସଂକ୍ଷେପରେ କୀର୍ତ୍ତନ। ଆମ ପିଲା ସମୟରେ ଏଇ ଗୋଟିଏ ମାତ୍ର ପୋଖରୀ ଥିଲା। ଆମେ ଗାଁରେ ଥିଲୁ। ଝାଡ଼ା ବସି ସାରିବା ପରେ ଛଅଞ୍ଚୁ ଥିଲୁ। ପୋଢୁଅ, ବଳଦଙ୍କୁ ଗାଧୁଆ କରୁଥିଲେ। ୩ଟି ତୁଠ - ପୁରୁଷମାନଙ୍କ ପାଇଁ, ସ୍ତ୍ରୀମାନଙ୍କ ପାଇଁ ଏବଂ ପାଣ ଘର ପାଇଁ ଅଲଗା ତୁଠ। ବଳଦ ପୋଢୁଅ ପୋଖରୀ ଭିତରକୁ ଯିବା ପାଇଁ ଘୋସରା (Ramp) କରାଯାଇଥିଲା। ଯା ପୂର୍ବରୁ ଗାଁ ବାହାରେ ଥିଲା ପୋତା ପୋଖରୀ। ତାକୁ କେହି ପରୀକ୍ଷା ପୋଖରୀ କହନ୍ତି। ଏହା ବ୍ୟବହାରରେ କମ୍ ଆସୁଥିଲା। ମାତ୍ର ୧୯୫୩ ମସିହା ଘରପୋଡିରେ ଗାଁର ସାତ ପଣ ଲୋକ ରାସ୍ତା ପାଖରେ ଘର କରି ରହିବାରୁ ଏହି ପୋଖରୀ ଭଲ କାମରେ ଲାଗିଲା। ଆମ ଗାଁ ଭିତରେ ଆଉ ଗୋଟିଏ ପୋଖରୀ ଅଛି ସାନଗୋରଡ଼ା ଗାଁ ପାଖରେ। ତାକୁ ପଦ୍ମ ପୋଖରୀ କହନ୍ତି। ଏହି ପୋଖରୀ ପାଖରେ ଥିବାରୁ ସାନ ଗୋରଡ଼ା ଲୋକଙ୍କ ବ୍ୟବହାରରେ ଆସୁଛି। ପରେ ଗାଁର ସୋଲଦଣ୍ଡାକୁ କିଛି ଅଂଶ ବନ୍ଧ କରି ସାଉକାର ଘର ଲୋକନାଥ ପ୍ରଧାନଙ୍କ ସ୍ତ୍ରୀ ଗୋଟିଏ ପୋଖରୀ କରାଇଲେ ଯା'କୁ କହୁଛନ୍ତି ବୁଢ଼ି ପୋଖରୀ। ଅପେକ୍ଷାକୃତ ବହୁତ ଛୋଟ। ସେହିପରି ଗାଁକୁ ସଂଲଗ୍ନ କରୁଥିବା ରାସ୍ତା ପାଖର ନାଳକୁ ବନ୍ଧ କରି ଗୋଟିଏ ପୋଖରୀ କଲେ ଆଙ୍ଗସାଙ୍ଗିର ବାବାଜୀ ବୃନ୍ଦାବନ ଦାଶ। ଯାକୁ କହୁଛନ୍ତି

ବାବାଜୀ ପୋଖରୀ। ଏହିପରି ଗାଁ ଭିତରେ ଅଛି ୫ଟି ପୋଖରୀ।

ଆମ ସମୟରେ ଗାଁରେ କୂଅ ଥିଲା ମୋଟ ୫ଟି। ଗୋଟିଏ ପାଲା କୂଅ। ତେଲଙ୍ଗା ସାହିର ଲୋକେ ପାଣି ନେଉଥିଲେ। ପୂର୍ବ ପଟ ସାଉକାର ଘର ତାଙ୍କ ବିଲରେ ଗୋଟିଏ କୂଅ କରିଥିଲେ। ଏହି କୂଅରୁ କରଣ ସାହି, ଗାଁର ଦକ୍ଷିଣ ଧାଡ଼ିର ଅଧା ଲୋକ ପାଣି ନେଉଥିଲେ। ସାଉକାର ଘର ଭିତରେ ଆଉ ଗୋଟିଏ କୂଅ ଥିଲା। ଏଇଟା ତାଙ୍କ ପରିବାରର ନିଜସ୍ୱ। ଗାଁର ଉତ୍ତର ଧାଡ଼ିରେ ସର୍ବରାକାରଙ୍କ ବାଡ଼ିରେ ଗୋଟିଏ କୂଅ ଥିଲା ଏବଂ ଆଉ ଗୋଟିଏ ହଜାରୀ ସ୍ୱାଇଁଙ୍କ ବାଡିରେ। ଏହା ବାଦ ଗାଁରୁ ଉଠି ଯାଇଥିବା ଚୈତନ୍ୟ ଭଞ୍ଜଙ୍କ ପରିବାର ସେଠି ଗୋଟିଏ କୂଅ ଖୋଳି ପାଣି ନେଉଥିଲେ। ଆଙ୍ଗସିଙ୍ଗି ଜିତ ଅଖାରିଆମାଳରେ ବାସ କରୁଥିବା ଭଗବାନ ସ୍ୱାଇଁ ତାଙ୍କର ବ୍ୟବହାର ପାଇଁ କୂଅ ଖୋଳିଥିଲେ।

ଏହାଛଡ଼ା ଆମ ପରିବାର ୧୯୬୪ରେ ଗାଁ ଛାଡ଼ି ନୂଆ ଘରେ ରହିଲା ପରେ ଗୋଟିଏ କୂଅ ଖୋଳିଥିଲେ। ମୋର ଦାଦା ଲିଙ୍ଗରାଜ ଦୋରା, ସୌରୀ ଭଞ୍ଜଙ୍କର ମଧ୍ୟ ଗୋଟିଏ କୂଅ ଥିଲା। ବର୍ତ୍ତମାନ ନଳକୂଅ କରାଯିବା ପରେ ସେପରି କୂଅର ଆବଶ୍ୟକତା ପଡିଲାନି ଏବଂ ସେଗୁଡ଼ିକ ଶୁଖିଲା ପଡିଗଲା।

ଆମ ଗାଁରେ ଗୋଟିଏ ମାତ୍ର ବାଙ୍ଘିଥିଲା। ତାହା ସାଉକାର ଘରଙ୍କର। ଏବେ ନଷ୍ଟବିନିଷ୍ଟ ଅବସ୍ଥାରେ।

ବର୍ଷାଦିନେ ଧାନ ଫସଲ ପାଇଁ ବେଳବେଳେ ଦୁଆଣ୍ଟ ନଈରେ ବନ୍ଧ ପଡ଼େ। ଖମା ଦେଇ ନଈ ପାଣି ଆସେ। ଧାନ ଗହୀର, ପୋଖରୀ ପାଣିରେ ପୂର୍ଣ୍ଣ ହୁଏ। ବିଲରେ ପ୍ରବଳ ମାଛ ହୁଅନ୍ତି। ବିଲରୁ ମାଛ ଧରାଯାଏ। ଅନେକ ମାସ ଯାଏଁ ମୁଗୁରା ବସାଇ। ଏବେ ନଈରେ ବାଲି ନାହିଁ। ବନ୍ଧ ପକାଇବା ସମ୍ଭବ ନୁହେଁ। ଧୁସୁମା ଗାଁ ପାଖରେ ଦୁଆଣ୍ଟ ନଈରେ ଆନିକଟ ହୋଇ ଥିବାରୁ ଆମ ଗାଁ ଗହୀରକୁ ପାଣି ଆସୁଛି।

ଏବେ ଆମ ଗାଁରେ କୁସୁମି ନଈରୁ ପମ୍ପ ଯୋଗେ ପାଣି ଆସୁଛି। ସରକାରଙ୍କ ଜଳ ଯୋଗାଣ ବ୍ୟବସ୍ଥାରେ ଗାଁରେ ବହୁତ ଲୋକ ନଳକୂଅ କରିଛନ୍ତି। ୩୦/୪୦ ଫଟ ପର୍ଯ୍ୟନ୍ତ ବୋରିଂ କରି ଗାଁର କିଛି ଚାଷୀ ଗହିରରେ କରିଛନ୍ତି ବୋରୱେଲ କୂଅ। ବିଦ୍ୟୁତ୍ ସଂଯୋଗ ଫଳରେ ପାଣି ଦିଆଯାଉଛି ଆଖୁ ବିଲକୁ, ଧାନ ବିଲକୁ। ଆଗରୁ ଆଖୁଚାଷ ପାଇଁ ଦୁଆଣ୍ଟ ନଈ କୁସୁମୀ ନଈରେ ଟେଣ୍ଡାରେ ପାଣି ଉଠାଯାଏ। ଉଚ୍ଚା ଥିଲେ ଅନେକ ସମୟରେ ପାଣି ଉଠାଇବା ପାଇଁ ଟେଣ୍ଡାର ଦୁଇସ୍ତର ଆବଶ୍ୟକ ହୁଏ। ଖରାଦିନେ ଆଖୁକୁ ପାଣି ମଡ଼ାଇବା ବଡ଼ କଷ୍ଟର କାମ। ଏବେ ଟେଣ୍ଡା ପ୍ରଥା ନାହିଁ। ପମ୍ପ ଆସିବାରୁ ବହୁତ ଆରାମ। ସେହି ସମୟରେ ଆଖୁକୁ ବିପଦ ଥିଲା ଭାଲୁ

ଏବଂ ବିଲୁଆମାନଙ୍କ ପାଖରୁ। ଏବେ ଜଙ୍ଗଲରେ ଭାଲୁ ନାହାନ୍ତି। ବିଲରେ ବିଲୁଆ ରହୁନାହାନ୍ତି। ଆମ ପିଲାବେଳେ ସନ୍ଧ୍ୟାବେଳେ ବିଲୁଆମାନଙ୍କ ରଡ଼ି ଶୁଣୁଥିଲୁ। ଭାଲୁ ଦେଖିଛୁ। ସକାଳୁ ସକାଳୁ ଆଖୁ ପଦାରେ ବୁଲି ଭାଲୁ ଜଙ୍ଗଲକୁ ଫେରେ।

ଧାନ ବାହାର କରିବାକୁ ବେଙ୍ଗଳା ପଡୁଥିଲା। ବଳଦ କିମ୍ବା ପୋଡୁଅମାନଙ୍କ ଦ୍ୱାରା ଧାନ ବେଙ୍ଗଳା ବେଳେ ମଝିରେ ଗୋଟିଏ ଶକ୍ତ ଖୁଣ୍ଟ ପୋତାଯାଏ। ତାଙ୍କୁ ମେରିଆ କହନ୍ତି। ଏହି ଖୁଣ୍ଟକୁ କେନ୍ଦ୍ରକରି ବଳଦମାନେ ବୁଲନ୍ତି। ଧାନ ଶିଂଶାରୁ ଧାନ ପଡ଼େ। ଏଇଠି ଗୋଟିଏ କଥା କହିରଖେ - ଆମ ନୟାଗଡ଼ ପାଖରେ ଅଛି ଗଞ୍ଜାମ ଏବଂ ଗଞ୍ଜାମ ଉଦୟଗିରି ଆଡ଼େ କନ୍ଧମାନେ ଅନ୍ୟ ଜାତିର ପିଲା କିମ୍ବା ବୁଢ଼ା ଯାହା ମିଳିଲା ତାଙ୍କୁ ମେରିଆ ବଳି ପକାନ୍ତି। ଯେଉଁ ଖୁଣ୍ଟରେ ବଳୀକୁ ଶକ୍ତ ଭାବରେ ବାନ୍ଧି ବଳି ପକାନ୍ତି ତାକୁ ମେରି ଖୁଣ୍ଟ କହନ୍ତି। ସେହି ଶବ୍ଦରୁ ବେଙ୍ଗଳା ବେଳର ଖୁଣ୍ଟକୁ ମେରିଆ ଖୁଣ୍ଟ କହନ୍ତି। କିନ୍ତୁ ମୁଁ ଦେଖିଛି ଆମ ଗାଁରେ ବେଙ୍ଗଳା ବେଳେ ମେରି ଖୁଣ୍ଟ ପୋତନ୍ତି ନାହିଁ। ବଳଦ କିମ୍ବା ପୋଡୁଅ ସେମିତି ବୁଲନ୍ତି। ମାତ୍ର ବୁଲେଇବା ପାଇଁ ଜଣେ ବାଳକ (ବିଶେଷତଃ ପୋଡୁଅ ମାହାର) ବଳଦଙ୍କ ପଛେ ପଛେ ବୁଲୁଥାଏ। ଏବେ ଲୋକମାନଙ୍କର ବଳଦ ପୋଡୁଅ ନାହିଁ। ସବୁ ମେକାନାଇଜଡ଼ ହୋଇଗଲାଣି। କଳେଇରୁ ଧାନ ସଂଗ୍ରହ ମେସିନରେ ହେଉଛି। ବେଙ୍ଗଳା ପରେ ଧାନ ଏବଂ ପାଳ ବାହାରେ,ଏବେ ଆଉ ପାଳର ଆବଶ୍ୟକତା ନାହିଁ। ସେବେ ଗୋରୁଗାଈ ପାଳ ଖାନ୍ତି। ଧାନ କାଟିଲାବେଳେ ନଡ଼ା ସଂଗ୍ରହ ହୁଏ। ଲମ୍ବାଧାନ ଗଛର ପଗ ଦେଢ଼ ଫୁଟ ଅଲଗା କାଟି ନଡ଼ା ରଖନ୍ତି ଘର ଛପର ପାଇଁ। ଏବେ ଆଉ ନଡ଼ା ଦରକାର ନାହିଁ। ସମସ୍ତଙ୍କ ଘର ଟାଇଲ/ ଆଜବେଷ୍ଟସ ନ ହେଲେ ଛାତଘର। ମୁଁ ଦେଖିଛି ଆମ ଗାଁ ସାଉକାର ଘରର ପାଟହଳିଆ ବିଦ୍ୟା ନାହାକ ତାଙ୍କ ପାଇଁ ତିଆରି କରିଥିବା ବିରାଟ ନଡ଼ା ଗଦା ସତେ ଯେମିତି ପିରାମିଡ଼। ମୁଁ ୧୯୪୦ରୁ ଦେଖି ଆସୁଛି ସବୁ ଜିନିଷ ଆଜି ପୂରା ବଦଳି ଗଲାଣି। ସମୟର ବଦଳ ସାଙ୍ଗରେ ବିଜ୍ଞାନର ପହୁଞ୍ଚ ସବୁ ବଦଳାଇ ଦେଲାଣି।

ଜୁଲାଇ ଅଗଷ୍ଟ ମାସ ବେଳକୁ ଆଖୁର ପଗ ବାହାରିପଡ଼େ। ପାହାଡ଼ରୁ ଭାଲୁ ଆସିବ ଆଖୁ ଖାଇବାକୁ। ସେଥିପାଇଁ ଆଖୁ ବିଲରେ ଭାଡ଼ି ତିଆରି ହୁଏ ଏବଂ ଲୋକେ ଯାନ୍ତି ଭାଡ଼ି ଜଗିବାକୁ। ହାତରେ ପାଳ ବିଣ୍ଡାର ନିଆଁ। ସକାଳୁ ଜଗାଳୀ ଫେରେ। ଏବେ ଭାଲୁ ନାହାନ୍ତି। ଆଖୁ ଭାଡ଼ିର ଆବଶ୍ୟକତା ଆଉ ନାହିଁ। ସମୟର କେଡ଼େ ପରିବର୍ତ୍ତନ!

ଆମ ଗାଁମାନଙ୍କରେ ଧାନ ଅମଳ ପରେ ମୁଗ ଚାଷ ହୁଏ। ବିଲରେ ପାଗ

ରହିଲେ ଚାଷ ହୋଇ ମୁଗ ବୁଣାଯାଏ। ଏହା ସାଙ୍ଗକୁ ପେଶୁ, ସୋରିଷ ମଧ୍ୟ ବୁଣା ହୁଏ ଏବଂ ଅଲଗା ଭାବରେ ଅମଳ ହୁଏ। ଏବେ ସବୁ ବଦଳି ଗଲାଣି। ମୁଗ ଭଲ ହଉନି। ଆମ ଗାଁ ପାଖରେ ଥିବା ପାହାଡ଼ ପାଖ ଗାଁମାନଙ୍କରେ ଚଣା ଚାଷ କରନ୍ତି। ଧାନ କଟା ପରେ ଚଣା ବୁଣନ୍ତି। ଏଥିପାଇଁ ମୁଗ ପରି ଲଙ୍ଗଳରେ ଚାଷର ଆବଶ୍ୟକତା ରୁହେନି। ମୁଁ ପିଲାବେଳେ ଦେଖିଛି ବାୟାପିଲ୍ଲି ଗାଁରେ ବୁଟ ଚାଷ କରନ୍ତି।

ଘର ବାଡ଼ିରେ ବାଇଗଣ, ଟମାଟ ଲଗାଯାଏ। ବର୍ଷାଦିନେ ବାଡ଼ କରେ ଲଗାଯାଏ କାକୁଡ଼ି, ଜହ୍ନି, ସଚିନ୍ଦ୍ରା, (ପୋଟଳ) ବରଗୁଡ଼ି। ଘରର ଖାଇବା ଏହି ପରିବାରୁ ହିଁ ମିଳେ। କାହା ପାଖରେ ପଇସା ନାହିଁ ପରିବା କିଣି ଖାଇବାକୁ। ଏବେ ଯେପରି ଗାଁରେ ଅନେକ ଗୁଡ଼ିଏ ପରିବା ଦୋକାନ, ସେ ଅମଳରେ ନ ଥିଲା। ପରିବା ଦୋକାନ ଥାଏ ଶରଣକୁଳରେ। ସେଠି ମିଳେ ଉଲି ପିଆଜ, ବିଲାତି ଆଳୁ। ତା ସାଙ୍ଗକୁ ଅନ୍ୟ ପରିବା। ସେମିତିଆ ଚାକିରି ନ କଲେ ଶରଣକୁଳରୁ ପରିବା କିଣିବା କଷ୍ଟ।

ବର୍ଷାଦିନ ସରିଲେ ବାଡିରୁ ମକା, କାଉଁରିଆ ଗଛ କାଟି ସଫା କରାଯାଏ। ଶେଷରେ ଗୋବରରେ ଲିପି ଖଳା ପ୍ରସ୍ତୁତ ହୁଏ ଧାନ କଟା ହୋଇ ଗଦାରେ ରଖିବାକୁ। ଖଳାରେ ନଡ଼ା ରଖନ୍ତି। ଧାନ ବେଙ୍ଗଳା ସରିଲେ ପାଳ ଗଦା କରି ରଖନ୍ତି। ଅମଳ ଧାନ ଘରେ ଓଳିଆ ପୁଡୁଗ, ଲୋଦର କିମ୍ବା ଧାନ ଘର (ଅଟେଇ) ରେ ରଖାଯାଏ। ମୁଗ ତ ବେଶି ଅମଳ ନାହିଁ। ତାକୁ ବସ୍ତାରେ ବୋଝରେ ରଖନ୍ତି। ଏହିପରି ଅନ୍ୟାନ୍ୟ ଶସ୍ୟ ବୋଝରେ ରଖନ୍ତି। ଲୋକମାନେ ଚାଷ କରି ଅର୍ଜନ କରିଥିବା ଧାନକୁ ଖର୍ଚ୍ଚ କରନ୍ତି ଭାଦ୍ରବ ପର୍ଯ୍ୟନ୍ତ। ତା'ପରେ ଆବଶ୍ୟକ ହୁଏ ଧାର ଏବଂ କରଜ। ଗାଁର ୭/୮ ପରିବାରକୁ ଛାଡ଼ିଦେଲେ ସମସ୍ତେ କରଜ କରନ୍ତି। ଏହି କରଜ ଯୋଗୁ ମୂଳ ସହିତ ସୁଧ ଦେଲେ ପୁଣି ଆରବର୍ଷକୁ ଆହୁରି କଷ୍ଟ ପଡ଼େ। ଏଣୁ ବହୁତ ଲୋକ ଜମି ବିକନ୍ତି ଏବଂ ସାଉକାର ଘର ଧାନଜମି ବଢ଼େ। ଆମ ଗାଁ ସୁନାରି ପରିବାର ମୋ ଜାଣିବାରେ ଉଚ୍ଛନ୍ନ ହୋଇଗଲେ। କିଛି ପରିବାର ଗାଁ ଛାଡ଼ି ଅନ୍ୟତ୍ର ଗଲେ ରହିବାକୁ। ଆମ ଗାଁର ବିଦ୍ୟାଧର ପଟ୍ଟନାୟକଙ୍କ ପୁଅ ଜୟ ଓ ବିଶି, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟଙ୍କ ପୁଅ ବୀରଭଦ୍ର, ପାହାନ ଘର ଘନ ଓ ତାଙ୍କ ଭାଇ ଶ୍ୟାମ ଗାଁ ଛାଡ଼ିଛନ୍ତି।

ସାଉକାର ଘର ରାଜ କିଶୋର ମୋର ପଢ଼ାସାଥୀ। ପୁଣି ଏହି ପରିବାର ଆମର ସଂଗାତଘର। ତେଣୁ ତାଙ୍କ ଘରକୁ ଅନେକ ସମୟରେ ଯାଏ। ଦେଖେ

ତାଙ୍କର ଧାନ ଅମାର, ଖଳାରେ ଧାନଗଦା, ପାଳଗଦା, ନଡ଼ାଗଦା। ସବୁବର୍ଷ ସମ୍ପତ୍ତି ତାଙ୍କର ବଢ଼େ। ମୁଁ ୧୯୪୪-୪୫ ରୁ ଲକ୍ଷ୍ୟ କରିଛି ତାଙ୍କ ପରିବାରକୁ। କୁବେର ଲୋକନାଥ ପ୍ରଧାନଙ୍କ ମା', ଲୋକନାଥ ପ୍ରଧାନଙ୍କ ସ୍ତ୍ରୀ, ନିଜେ ଲୋକନାଥ ପ୍ରଧାନ, ଲୋକନାଥ ପ୍ରଧାନଙ୍କ ଭଉଣୀ ମଣ୍ଡେଇ ନାନି, ଲଡୁ କିଶୋର, କିର୍ତ୍ତୀ ଚନ୍ଦ୍ର, ଲଡୁ କିଶୋରଙ୍କ ସ୍ତ୍ରୀ, କିର୍ତ୍ତୀ ଚନ୍ଦ୍ରଙ୍କ ସ୍ତ୍ରୀ, କିର୍ତ୍ତୀ ଚନ୍ଦ୍ରଙ୍କ ଦୁଇ ପୁଅ ଶରତ ଏବଂ ଭିକାରି, ଲଡୁ କିଶୋରଙ୍କ ଚାରି ପୁଅ ; ରାଜୁ, ବାଲୁଙ୍କି, ବ୍ରଜ ଏବଂ କେଦାର। ଲଡୁ ନନାଙ୍କ ପାଞ୍ଚ ଝିଅ। ଯଥା- ରତନି, ହେମ, ନିଶା, ଶାନ୍ତି ଏବଂ ଜୟନ୍ତୀ। କୀର୍ତ୍ତିନନାଙ୍କ ଝିଅ କୌଶଲ୍ୟା।

ସେବେ ହଳିଆ ଲାଗିଲେ, ଯେ ପୁରା ବର୍ଷ ସବୁଦିନ ଆସିବ ତାକୁ ମିଳେ ଶଗଡ଼େ ଧାନ (୮୦ ନଉତି) ଅର୍ଥାତ୍ ଏବ ହିସାବରେ ୮୦ ନଉତିର ଦାମ ୮୦୦୦ ଟଙ୍କା। ଅର୍ଥାତ୍ ମାସକୁ ୭୦୦ ଟଙ୍କା। କେହି ଲାଗନ୍ତି ଫାଳେ, କେହି କାଣିଚା ଲାଗନ୍ତି। ଏହି ହଳିଆମାନଙ୍କୁ ଜମି ଅଧମାଣେ ଦୁଇପା ଦିଅନ୍ତି ଭାଗରେ ଚାଷ କରିବାକୁ ଦିଅନ୍ତି।

ସେତେବେଳର କି ଦୁଃଖ! ଯେଉଁମାନେ ଅନ୍ୟକୁ ଭାଗଚାଷ କରିବାକୁ ଦିଅନ୍ତି, ଏଥିରେ ଚାଷୀ ଦିଏ ଦୁଇ ତୃତୀୟାଂଶ ଅର୍ଜିତ ଧାନ, ଜମିମାଲିକର ଚାଳ ଛପର କରେ ଏବଂ ସମୟ ଅସମୟରେ କୁଆଡ଼େ ଗଲେ ଶଗଡ଼ ଦେଇ ସାହାଯ୍ୟ କରେ। ଏବେ କି ଫରକ! ସରକାରଙ୍କ ତରଫରୁ ଚାଉଳ, ଗହମ ଇତ୍ୟାଦି ବିଭିନ୍ନ ଯୋଜନାରେ ପାଇଲା ପରେ କେହି ଭାଗ ଚାଷ କରିବାକୁ ଆଗ୍ରହୀ ନୁହନ୍ତି। ଚାଷ କଲେ ଯାହା ଅମଳ ହେବ ଅଧା ଦଉଛନ୍ତି, ମାତ୍ର ଅନ୍ୟାନ୍ୟ ସେବା ସାହାଯ୍ୟ କରୁ ନାହାନ୍ତି।

ଏବେ ଗାଁରେ କେହି ହଳିଆ ଲାଗୁନାହାନ୍ତି। ପୋଡୁଅ ମାହାର ପାଇବା ସାତସପନ।

ସାଉକାର ଘରେ ଯେଉଁମାନେ ହଳିଆ ଲାଗୁଥିଲେ, ସେମାନେ ଆମ ଗାଁରୁ, ଧୁଷୁମା, ସାନ ଗୋରଡା ଓ ଆଙ୍ଗସିଙ୍ଗିରୁ, ଏହା ବାଦେ ସାଉକାର ଘର ଅଧିକା ମୂଲିଆ ଲଗାନ୍ତି ବଛା ଖେଳୁଆ, ଧାନ କଟା ସମୟରେ। ତାଙ୍କର ସେ ସମ୍ପତ୍ତି ମୁଁ ଦେଖିଛି ସେତେବେଳେ।

ଆମ ପାଖ ଗାଁମାନଙ୍କରେ ଆଶ୍ୱିନ ମାସ ବେଳକୁ ଚାନ୍ଦା କରି ଚାଉଳ ନେଇ ଜଙ୍ଗଲ ପାଖାପାଖି ପଦାରେ ଯନ୍ତାଳ (ଭୋଜି) କରନ୍ତି।

ଆମ ଗାଁରେ କେବେ ଯନ୍ତାଳ ହୋଇନି। ମାତ୍ର ସାଉକାରଘର ହଳିଆମାନେ ତାଙ୍କଠୁ ଚାଉଳ ଡାଲି ଏବଂ ପରିବା ନେଇ ଭୋଜି କରନ୍ତି। ଥରେ ଏ ଭୋଜିକୁ

ଯାଇଥିଲି ରାଜ ସାଙ୍ଗରେ। ଯାକୁ ହଳିଆ ଭୋଜି କହନ୍ତି।

ମଲା ମୃତ୍ତିକାରେ ନଚେତ୍ ବାହା ପୁଆଣିରେ ଲୋକମାନେ ଭୋଜି କରନ୍ତି। ମାତ୍ର ଏହା ତାଙ୍କ ନିଜ ଜାତି ଭିତରେ ସୀମିତ। ଚଷା ଜାତିରେ ତାଙ୍କ ଲୋକ ହେଲେ କିମ୍ବା ଗୁଡିଆମାନେ ତାଙ୍କ ଜାତି ଲୋକଙ୍କୁ ନେଇ ଭାତ ଡାଲମା ଓ ଗୋଟିଏ ତରକାରି କରି ତୋଷନ୍ତି। ଆମ ତେଲୁଗୁ ଜାତିରେ ମଧ୍ୟ ସେହି ଜାତି ଭିତରେ ସିମିତ। ରାତ୍ର ୧୦ଟା ବେଳକୁ ଭୋଜି ହୁଏ। ସମସ୍ତେ ଖଳାରେ ତଳେ ବସନ୍ତି, ଚକାମୁଣ୍ଡି ନୁହେଁ ସିଧା ଆଣ୍ଠୁ ଠିଆ କରି। ତେଲୁଗୁ ଭୋଜିରେ ଆରିଷା ଗୋଟେ ବିରିପିଠା ଦୁଇଟା ଦିଅନ୍ତି। ମାତ୍ର ଏହାକୁ ଭୋଜିରେ ଖିଆଯାଏନା, ଅଲଗା ଗୋଟିଏ ଖଲିରେ ବାନ୍ଧି ଘରକୁ ଆଣନ୍ତି।

ମୋର ଦାଦା ଲିଙ୍ଗରାଜ ଦୋରା ଏହି ସାଉକାର ପରିବାରର ଖଜଣା ଅସୁଲକାରୀ ଥିଲେ। ଧୁଷୁମା ଓ ଆଙ୍ଗସିଙ୍ଗର ସର୍ବରାକାର ଯଥାକ୍ରମେ କିର୍ତ୍ତୀ ଚନ୍ଦ୍ର ଏବଂ ଲଡୁ କିଶୋର। ୧୯୫୯ ମସିହା ବେଳକୁ ସାଉକାର ପରିବାର ଗୋଟିଏ ସେକେଣ୍ଡହାଣ୍ଡ ଟ୍ରକ ୬୦୦୦ ଟଙ୍କା ଦେଇ କିଣିଥିଲେ। ସେମାନେ ନିଜ ଧାନ ଏହି ଟ୍ରକ୍ ରେନେଇ ଜଟଣିରେ ଦେଉଥିଲେ। ଯେତେବେଳେ ଟ୍ରକ୍ ଗାଁ ଭିତରକୁ ଆସେ, ଲୋକେ ସମସ୍ତେ ଉତ୍ସୁକ ନୟନରେ ଟ୍ରକ ଦେଖନ୍ତି।

ଆଙ୍ଗସିଙ୍ଗି ଗାଁରେ ସାଉକାର ପରିବାରଙ୍କର ଗୋଟିଏ ଦୋକାନ ଘର ଥିଲା। ପୁଆଣିଆର ଗୁରୁମୂର୍ତ୍ତି ପାତ୍ର, ଚଇତନ ପାତ୍ର ଏବଂ ସାଉକାର ଘର ଭାଗରେ କରିଥିଲେ। ଏହି ଦୋକାନ ବହୁଦିନ ଧରି ଚାଲିଥିଲା। ଏଠି ମିଳୁଥିଲା କିରାସିନି, ସୋରିଷ ତେଲ, ଅନ୍ୟାନ୍ୟ ଖାଇବାତେଲ, ଗୁଡ, ମିଶ୍ରି, ଡାଲି ଇତ୍ୟାଦି।

ଆମ ଗାଁ ପଶ୍ଚିମ ପଟ ଦକ୍ଷିଣ ପାଶ୍ୱର୍ରେ ଥିଲା ଖଦାଳ ସାହି। ୭/୮ ଘର ଖଦାଳ ଥିଲେ। ଏମାନେ ୧୯୪୫-୪୬ ବେଳକୁ ଏହି ଡ଼ିହକୁ ସାଉକାର ଘରକୁ ବିକି ଦୁଆଣ୍ଟ କୁଳକୁ ଚାଲିଗଲେ। ଏହି ବସତିକୁ ବିଲଗୋରଡ଼ା କହୁଛନ୍ତି। ଏହି ସାନ ଗୋରଡ଼ା ଜିତ୍ ରେ ଏହା ଗୋଟିଏ ହାମଲେଟ ଗାଁ। ଏହି ଖଦାଳମାନେ ଆଗ ବାହାଘରମାନଙ୍କରେ ସବାରି ପାଲିଙ୍କି କାନ୍ଧଉଥିଲେ। ସାଉକାର ଘର ୨ଟା ସବାରି ଏବଂ ପାଲିଙ୍କିଥିଲା। ଭଡ଼ାରେ ଦିଆଯାଉଥିଲା। ଆମେ ଗଳ୍ପ ଉପନ୍ୟାସରୁ ପଢ଼ୁ କଟକ ଆଡ଼େ ଗଉଡ଼ମାନେ ପାଲିଙ୍କି କାନ୍ଧାନ୍ତି। ବ୍ରିଟିଶ୍ କାଳରେ ଓଡ଼ିଶାର ଗଉଡ଼ମାନେ ପାଲିଙ୍କି ବୋହିବା ବ୍ୟବସାୟ କରି କଲିକତାରେ ଭଲ ରୋଜଗାର କରିଛନ୍ତି।

ସାଉକାର ଘର ଲୋକନାଥ ପ୍ରଧାନଙ୍କ ଆଉ ଜଣେ ଭାଇଥିଲେ। ଏହି

ଭାଇଙ୍କର ଦୁଇଝିଅ। ଗୋଟିଏ ଝିଅ ବାହା ହୋଇଛି ଉସ୍ତପଡ଼ାରେ ଏବଂ ଆଉ ଗୋଟିଏ ଗମେଇରେ। ଲୋକନାଥଙ୍କ ସାନପୁଅ କୀର୍ତ୍ତନ ପୁଅ ହୋଇ ଏଇ ମୃତ ଦାଦାଙ୍କୁ ପିଣ୍ଡଦାନ କରୁଛନ୍ତି। ଉସ୍ତପଡ଼ା ଝିଅର ପୁଅ କାଶି ଆମ ଗାଁକୁ ଆସିଲେ ଆମ ସାଙ୍ଗରେ ଖେଳେ। ଗମେଇ ଝିଅର ପୁଅ ବାସୁ ଶରଣକୁଳରେ ପଢୁଥିଲେ ମାଟ୍ରିକ୍ ପାଶ କରିନାହାନ୍ତି। ସେ ମୋ'ଠୁ ୨ ବର୍ଷ ବଡ଼। ୫୦ ବର୍ଷ ବୟସରେ ରକ୍ତ ଚାପରେ ତାଙ୍କର ମୃତ୍ୟୁ ହୋଇଛି।

ଲଡ୍ଡୁ କିଶୋରଙ୍କର ୫ ଝିଅ। ବଡ଼ଝିଅ ରତନି, ତୃତୀୟ ଝିଅ ନିଶାର ମୃତ୍ୟୁ ହୋଇଛି। କୀର୍ତ୍ତିଚନ୍ଦ୍ରଙ୍କର ଗୋଟିଏ ଝିଅ କୌଶଲ୍ୟା। ତା'ର ସ୍ୱାମୀ ଅଭିମନ୍ୟୁର କିଛି ବର୍ଷ ହେଲା ମୃତ୍ୟୁ ହୋଇଛି। ତା'ର ଦୁଇପୁଅଙ୍କ ମଧ୍ୟରୁ ବଡ଼ପୁଅ ଗୋଟିଏ ଦୁର୍ଘଟଣାରେ ଚାଲିଯିବାରୁ କୀର୍ତ୍ତିଚନ୍ଦ୍ରଙ୍କ ବଡ଼ ଶକ୍ ହୋଇଗଲା ଏବଂ ତାଙ୍କର ମାନସିକ ବଳକୁ ଦୋହଲାଇ ଦେଲା।

୧୯୩୦ ମସିହା ବେଳକୁ ଆମ ଗାଁରେ ଦୁଇଜଣ ସର୍ବରାକାର ଥିଲେ। ଜଣେ ଏବର୍ଷ ହେଲେ ଆଉ ଜଣେ ଆରବର୍ଷ। ସତାର ଖାଁ ନୟାଗଡ଼ କିଲ୍ଲାର ସୁପରିନଟେଣ୍ଡେଣ୍ଟ ଥିଲାବେଳେ ଦୁଇକାଟିକି ଜଣକୁ କଲେ ଏବଂ କ୍ଷେତ୍ରମୋହନ ହେଲେ ସର୍ବରାକାର। ଅନ୍ୟ ଜଣେ ସର୍ବରାକାର ଥିଲେ ଆମ ପରିବାରର କୃଷ୍ଣଚନ୍ଦ୍ର ଦୋରା।

**ସଂକୀର୍ତ୍ତନ:** ଏବେ ଯେପରି ଆମ ଗାଁର ବିଭିନ୍ନ ପୂଜା, ଅନୁଷ୍ଠାନମାନ ଚାଲିଛି ସେବେ ସେମିତି ନଥିଲା। ଛୁଆ ଜନ୍ମ ହେଲେ ଏକୋଶିଆ ଦିନ ଘର ଆଗରେ ସଂକୀର୍ତ୍ତନ ହୁଏ। କୌଣସି ଲୋକ ମରିଗଲେ ତା'ର ୧୧ଶ/୧୨ଶ ଭୋଜିଦିନ ସଂକୀର୍ତ୍ତନ ହୁଏ। ସଂକୀର୍ତ୍ତନ କହିଲେ ଗୋଟିଏ ନଦିଆ, ଦି ହଳ ଝାଞ୍ଜ, ଜଣେ ଗାୟକ। କିଛି ଲୋକେ ବସିବେ। ଆମ ଗାଁରୁ ଘର ଜୁଆଁଇ ହୋଇ  ଯାଇଥିବା ସିନା ଦୋରା (ଅଗାଧୁ ଦୋରାଙ୍କ ତଳ ଭାଇ) ଶ୍ରୀ କୃଷ୍ଣଙ୍କ ଉପରେ ଗୀତ ବୋଲନ୍ତି। ପରେ ଗାଁରେ ସଂକୀର୍ତ୍ତନ ବ୍ୟବସ୍ଥାର ଉନ୍ନତି ହୋଇଛି। ମାଳୀ ଆସି ଫୁଲଚନ୍ଦନ ଦେବ ସଂକୀର୍ତ୍ତନରେ ଅଂଶଗ୍ରହଣ କରୁଥିବା ଲୋକଙ୍କୁ।

ମୋ ପିଲାବେଳର ବିଶେଷ ସ୍ମୃତି ଆସିଯାଏ। କାର୍ତ୍ତିକ ପୂର୍ଣ୍ଣିମାଦିନ ଗାଁର ବହୁତ ଲୋକ ଖୋଳ କରତାଳ ବଜାଇ ଗାଁ ବୁଲନ୍ତି। ଆମେ ପିଲାବେଳେ ଯାଉ ଗୁଞ୍ଜାବାରଣ ଜିତରେ ଥିବା କପିଳେଶ୍ୱର ଠାକୁରଙ୍କୁ ଦର୍ଶନ କରିବାକୁ। ମାଁ ଦେଇଥାଏ ତମ୍ବା ପଇସାଟିଏ। ସଂଧ୍ୟାବେଳେ ଗାଁର କିଛି ଲୋକମାନେ ଯାଆନ୍ତି ଶରଣକୁଳ ଲଡୁବାବାଙ୍କୁ ଦର୍ଶନ କରିବାକୁ।

ମାଛ : ଗାଁରେ ବର୍ଷାଦିନେ ବିଲରେ ମାଛ ପ୍ରବଳ। ଶ୍ରାବଣ ମାସଠାରୁ ବିଲରେ ମୁଗୁରା, ନଟେଇ ଦ୍ୱାରା ମାଛ ଧରନ୍ତି। କେରାଣ୍ଡି, ଦଣ୍ଡେଇ, ଗଡିଶ, ତୋଡ଼ି ଇତ୍ୟାଦି। ତରକାରିକୁ ବେଶି ହେଲେ ଚୁଲିରେ ବସାଇ ପିତା ଶୁଖୁଆ କରନ୍ତି। ଆମ ଘରେ ମୋ ବାପା ଏବଂ ଭାଇ ଦଣ୍ଡପାଣି ବିଲରୁ ମାଛ ଧରିବାର ଧୁରନ୍ଧର। ଖରାଦିନେ ଗାଁରେ ମାଛ ମିଳେନା। ବେଳେବେଳେ ପୁଆଣିଆଁ ଗାଁରୁ ତିଅରୁଣିମାନେ ଚୁନାମାଛ, ଚିଙ୍ଗୁଡ଼ି ବିକିବାକୁ ଆସନ୍ତି। ଚାଉଳ କିମ୍ବା ଧାନ ଦେଇ କିଣାଯାଏ। ପଇସା ସାତ ସପନ। ସମୟ ସମୟରେ ଚିଲିକାମାଛ ସାଇକେଲରେ କାଳୁପଡ଼ାରୁ ଆସେ। ତାକୁ କିଣୁ। ଶୀତଦିନ ଆସିଲେ ଗାଁ ନାଳ, ଦଣ୍ଡାରେ ପାଣି କମିଲେ ଗାଁ ବାଲା ସମସ୍ତେ ପଶି ମାଛ ଧରନ୍ତି। ସେଇଟା ବର୍ଷକୁ ଥରେ ମାତ୍ର। ଗାଁ ନାଳରେ ଆଖୁଚାଷୀମାନେ କୂଅ ଖୋଳି ପାଣି ତେଣ୍ଡାରେ କିମ୍ବା ସେଣାରେ ବୁହାନ୍ତି। ଡିସେମ୍ବର ବେଳକୁ ଏହି କୂଅକୁ ଲୋକେ ସେଣାରେ ଶୁଖାଇ ମାଛ ଧରନ୍ତି। ପରେ ଅର୍ଥାତ୍ ୧୯୭୦ ମସିହାବେଳକୁ ବଡ଼ ପଣ୍ଡୁସରର ଗୋଖାମାନେ ଗାଁ ପୋଖରୀରେ ଜାଆଁଳ ଦେଇ ମାଛ ବଡ଼ ହେଲେ ଧରି କିଣି ନିଅନ୍ତି। ମିଳେ ରୋହି କିମ୍ବା ଭାକୁର ମାଛ। ଲୋକେ ପଇସା ଦେଇ କିଣନ୍ତି। ସାଉକାର ଘର ପୋଖରୀରେ ସେମାନେ ମାଛ ଜାଆଁଳ ଛାଡ଼ି ବିକୁଥିଲେ। ଏବେ ବି ସେମିତି ଚାଲିଛି। ମାତ୍ର ସାଉକାର ଘର ପୁରୁଣା ପୋଖରୀ କ୍ରମେ ପୋତି ହୋଇ ପଡ଼ିଛି। ରକ୍ଷଣାବେକ୍ଷଣ ନାହିଁ।

ଆମ ହାଇସ୍କୁଲ ପଢ଼ିଲାବେଳେ ଅର୍ଥାତ୍ ୧୯୫୩-୫୪ ମସିହାବେଳକୁ ଶରଣକୁଳରେ ଗୋଟିଏ ମିଆଁ ରହି ଖାସି କାଟେ। ସେ ଶରଣକୁଳରେ ମାଂସ ବିକେ। ଗାଁମାନଙ୍କରୁ ଛେଳି କିଣେ। ଦଶହରା ବେଳକୁ ଗାଁରେ ବୋଦା ପଡ଼େ। ଗାଁ ଧୋବା ବନା ସେଠୀ ବୋଦା ଛେଦ କରେ। ଏହି ମୌକାରେ ଆମେ ପାଉଁ ବୋଦା ମାଉଁସ।

ସେବେ ଗାଁକୁ ଆସେ କେନ୍ଦୁ ବିକା ହେବାକୁ। ଛେଳି ଛେନା ଗୋଲଣୀମାନେ ବିକନ୍ତି। କୁମ୍ଭାର ଶଗଡ଼ରେ ଆଣେ ମାଟିରେ ତିଆରି ପୋଡ଼ ଖାଇଥିବା ହାଣ୍ଡି, ଡ଼େକଚି, ବଡ଼ ପାଣି ହାଣ୍ଡି, ସବୁ ମାଟିରେ ତିଆରି। ଆଜି ଆମାନଙ୍କ ଘରେ ଚଟୁ ଠାରୁ ଯେତେକ ସିଲଭର ସାମାନ ଅଛି ସେ ସବୁ କୁମ୍ଭାରମାନେ ମାଟିରେ ଗଢ଼ି ବିକୁଥିଲେ। ଓଡଗାଁ ଆଡୁ ନାଲି ମାଟି ଯାହାକୁ ଆମ ଆଡ଼େ ରଙ୍ଗମାଟି ବୋଲି କହନ୍ତି। ତାକୁ ବଦଳ ଦେଇ ବୋତା(ମୁଗ ଗଛର ଡାଙ୍ଗ ପତ୍ର) ନିଅନ୍ତି। କନ୍ଦମୂଳ ମଧ୍ୟ ଏ ପଟୁ ଆସେ। ଶୀତଦିନେ ଗଞ୍ଜାମ ଶୁଖୁଆ ବେପାରି କୋକଲି, ଖାରପାଣିଆ ଇତ୍ୟାଦି ସମୁଦ୍ରରୁ ଧରା ମାଛରୁ ପ୍ରସ୍ତୁତ ଶୁଖୁଆ ଆଣି ବିକନ୍ତି। ବର୍ଷର ଅନ୍ୟ ସମୟରେ ଶିଖରପୁରରୁ କେଉଟୁଣୀମାନେ ଶୁଖୁଆ ଘରେ ଘରେ ପଶି ବିକନ୍ତି। ଶିଖରପୁର କିମ୍ବା ପୁଆଣିଆର

ତିଅରୁଣୀମାନେ ଧାନ/ ଚାଉଳ ନିଅନ୍ତି। ତେଣୁ ଏମାନଙ୍କଠୁ କିଣିବା ସୁବିଧା।

ଗାଁକୁ ଖରଡ଼ୁା ଆସେ କଂସା ପିତଳ ଗିନା ବିକିବାକୁ। ପାଟରାମାନେ ଆଣନ୍ତି ମନୋହରି ଜିନିଷ। ଆଖୁପୋଡ଼ା ସମୟରେ ଲୁଗାପଟା ବେପାରୀ ନିଲାମ ଧରି ବିକେ। ରେଟ ନ ପୋସାଇଲେ ଜିନିଷ ନ ଦେଇ କିଛି ଟଙ୍କା ଦିଏ କମିସନ ଭାବରେ ସର୍ବୋଚ୍ଚ ନିଲାମଧାରୀଙ୍କୁ।

୧୯୫୩ ମସିହାରେ ଆମ ଗାଁରେ ପାଠପଢ଼ାବାଲାମାନେ ଗୋଟିଏ ଥିଏଟର କଲେ। ଘର ସଂସାର ଡ୍ରାମା ଅଭିନିତ ହେଲା। ଡ୍ରାମା ଦୁଇଦିନ ହେଲା। ଲେଖକ ଥିଲେ ଦଶପଲ୍ଲାର ରାମଚନ୍ଦ୍ର ମିଶ୍ର। ଏହି ଡ୍ରାମାରେ ଅଂଶଗ୍ରହଣ କରିଥିଲେ ମୋ ବଡ଼ଭାଇ ମଦନ ମୋହନ, ଦାଦା ଦୁର୍ଯ୍ୟୋଧନ, ରାମଚନ୍ଦ୍ର ଦୋରା (କଞ୍ଜମୁ), ରାମଚନ୍ଦ୍ର ଦୋରା (ରାଇଷ୍ଟୁମ) ଲିଙ୍ଗରାଜ ପରିଡ଼ା, ଦଣ୍ଡଧର ନାଏକ ଏବଂ ଆମ ଗାଁର ଅନେକ ଲୋକ। ସାନଗୋରଡ଼ା ଗ୍ରାମରୁ ମିଶିଥିଲେ ଉଦୟନାଥ ପଟ୍ଟନାୟକ (ପଠାଣି), ଭବାନି ପଟ୍ଟନାୟକ, କୈଳାସ ପଟ୍ଟନାୟକ, ସୁରେନ୍ଦ୍ର ପଟ୍ଟନାୟକ। ଆଙ୍ଗସିଙ୍ଗିରୁ ଥିଲେ ନାରାୟଣ ରଥ। ଉଦୟନାଥ ପ୍ରଧାନ ଏବଂ ଗୋଲଗାଁରୁ ଥିଲେ ଅଗାଧୁ ବେହେରା। ଏହି ଡ୍ରାମା ଭଲ ନାଁ କଲା। ଆମ ଅଂଚଳରେ ଥିଏଟର ଆଗରୁ କେବେ ହୋଇନଥିଲା। ସାଉକାର ଘର ଖଦାଳ ସାହି ବାରିକୁ ସଫା ପରି ଏହି ଡ୍ରାମା କରାଯାଇଥିଲା। ଏହି ଡ୍ରାମାର ମୁଖ୍ୟଚରିତ୍ର ବର୍ମା ଭୂମିକାରେ ମୋ ବଡ଼ଭାଇ ମଦନ ମୋହନ ଅଭିନୟ କରିଥିଲେ। ସେତେବେଳକୁ ତାଙ୍କ ବୟସ ୨୪ ବର୍ଷ। ଜନତା ଥିଏଟର ଏହି ଡ୍ରାମା କଲାବେଳେ ବର୍ମା ଚରିତ୍ରରେ ଅଭିନୟ କରିଥିଲେ ପ୍ରଖ୍ୟାତ କଳାକାର ନିରଞ୍ଜନ ଶତପଥି। ଡ୍ରାମାକୁ ଡିରେକ୍ ସନ୍ ଦେଇଥିଲେ ଗୁଞ୍ଜିବାରଣର ଗଦାଧର ପଟ୍ଟନାୟକ ଓକିଲ।

୧୯୫୦ ମସିହା ବେଳକୁ ଗାଁରେ ଗୋଟିଏ ନାଚ ପାର୍ଟି ହେଲା। ୧୦ ବର୍ଷ ଖଣ୍ଡେ ପାର୍ଟି ରହିଥିବ। ଗୁରୁଥିଲେ କଲ୍ୟାଣପୁର ଗାଁର କାହ୍ନୁ ଚରଣ ମହାନ୍ତି। ନାଚ ପାର୍ଟିରେ ମିଶିଥିବା କିଛି ଲୋକ ହେଲେ ରାମଚନ୍ଦ୍ର ଦୋରା (ରାଇଷ୍ଟୁମା), ବାସୁଦେବ ଦୋରା, (କଦାଡ଼ି ବିମୁ), ଶ୍ୟାମ ଦୋରା, ତ୍ରିନାଥ ଦୋରା, ଲଡୁ ପଟ୍ଟନାୟକ, ହରି ପାତ୍ର, ଦୟାନିଧି ଦାସ, ହଜାରୀ ଲେଙ୍କା, ଛାଟିଆ ସ୍ୱାଇଁ, ମେଳିଆ ସ୍ୱାଇଁ, ବିଶ୍ୱନାଥ ପରିଡ଼ା, ଶ୍ୟାମ ପ୍ରଧାନ, ଦନେଇ ପ୍ରଧାନ ଓ ତାଙ୍କ ଭଣଜା ଛାଟିଆ, କୀର୍ତ୍ତନ ପାହାନ। ଏହା ବାଦ ଅନେକ ଅଛନ୍ତି ଯାହାଙ୍କ ନାମ ମୋହର ସ୍ମରଣ ହେଉନାହିଁ। ଆମ ଗାଁ ପାଖ ଆଙ୍ଗସିଙ୍ଗରେ ମଧ୍ୟ ଭଲ ନାଚ ପାର୍ଟି ଥିଲା। ସେମାନେ କାଳୀ ଦହନ କରୁଥିଲେ, ପରେ ଲୀଳାବନ୍ଦୀ ନାଟକ ଦେଖାଇଲେ। ମୋର ମନେ ଅଛି କୌଣସି ଏକ ଦୂର

ଗାଁରୁ ନାଚ ପାଇଁ ନିମନ୍ତ୍ରଣ ପାଇଲେ। ବିରାଟ ଭାରକୁ ବାହାଙ୍ଗିରେ ବୋହି ନେଲେ ଗାଁର ଭଣ୍ଡାରି ଧନୁ ଡାକୁଆ। ଗାଁର ୮ ପଣ ଲୋକ ଗଲେ ନାଟ ସାଙ୍ଗରେ। ସବୁଠୁ ଉଲ୍ଲେଖନୀୟ ବିଷୟ ଗାଁ ତେଲିଘର ସୁବୁଦ୍ଧି ପରିବାରର ସନେଇ, ବେଣୁ, ତାଙ୍କ ବଡ଼ଭାଇ ପଦିଆ ଏବଂ ବାପା। ନାଚ ପାଇଁ ଏହି ତେଲି ପରିବାର ଉତ୍ସର୍ଗୀକୃତ।

ଖରାଦିନେ ଗାଁରେ ହୁଏ ମେରୁଯାତ୍ରା। ନିଆଁରେ ଚାଲନ୍ତି ବର୍ଷେ ଅନ୍ତରରେ ବର୍ଷେ। ଯାକୁ ଝାମୁ ଯାତ୍ରା କହନ୍ତି।

ଏବେ ଦଶ ବର୍ଷ ହେଲା ଗାଁର ପଶ୍ଚିମ ପଟ ଭଗତ ଘରେ ଜଗନ୍ନାଥ ତ୍ରିମୂର୍ତ୍ତି ଆଣି ପୂଜା କରୁଛନ୍ତି। ମନ୍ଦିର ତିଆରି ହେଲେ ସେଠାକୁ ବିଜେ ହେବେ। ଗାଁରେ ପଞ୍ଚାୟତ ହୋଇଛି ଆମ ଗାଁ ସାନଗୋରଡ଼ା ଏବଂ ପାଟୁଲି ସାହିକୁ ନେଇ। ଗାଁରେ ପୂର୍ବରୁ ଥିବା 'କୃଷକ ବନ୍ଧୁ ପାଠାଗାର'ର ପୁନରୁଦ୍ଧାର କାର୍ଯ୍ୟ ଚାଲିଛି। ଅଳ୍ପ ଦିନ ଭିତରେ କାର୍ଯ୍ୟକ୍ଷମ ହେବ।

## କୃଷକ ବନ୍ଧୁ ପାଠାଗାର

ଆମ ଗାଁରେ ୧୯୪୮ ମସିହାରେ ପ୍ରତିଷ୍ଠିତ ହୋଇଥିଲା କୃଷକ ବନ୍ଧୁ ପାଠାଗାର। ବହୁତ ଛାତ୍ର ଏବଂ ଗ୍ରାମବାସୀ ଏଠୁ ବହିନେଇ ଉପକୃତ ହୋଇଛନ୍ତି ସମୟକ୍ରମେ ଏହି ପାଠାଗାର ଲୁପ୍ତ। ବର୍ତ୍ତମାନ ଏହାକୁ ପୁର୍ନଗଠନ କରି ନୂଆ ରୂପେ ଦେବାକୁ ଗାଁରେ ଉଦ୍ୟମ ଜାରି ରହିଛି। ଅନେକ ବହି, ମାଗାଜିନ୍ ଅଣାଯାଇଛି। ଆହୁରି ମଧ୍ୟ ଅଣାଯିବ। ରେଜିଷ୍ଟ୍ରେସନ ପାଇଁ ଉଦ୍ୟମ ହେଉଛି।

ସେ ସମୟର ପାଠପଢା ଯୁବକ ଯଥାକ୍ରମେ ହରେକୃଷ୍ଣ ଦୋରା (A.C.F), ଦଣ୍ଡଧର ନାଏକ (ଭାରତ ସରକାରଙ୍କ ପ୍ରେସ୍ ଇନ୍‌ଫରମେସନ ବ୍ୟୁରୋର ଜଣେ ଅଫିସର), ମଦନ ମୋହନ ଦୋରା (ଡେପୁଟି କଲେକ୍ଟର), ଲିଙ୍ଗରାଜ ପରିଡା (ଶିକ୍ଷକ) ଏବଂ ଦୁର୍ଯ୍ୟୋଧନ ଦୋରା (ଡାକ ବିଭାଗରେ କାମ କରିଥିଲେ), ଉଦ୍ୟୋକ୍ତା ହୋଇ ଗ୍ରାମବାସୀଙ୍କ ସହାୟତାରେ ଏହି ପାଠାଗାର ସ୍ଥାପନ କରିଥିଲେ।



# ଆମ ପରିବାର

୧୯୪୦ ମସିହା ପର ଏବଂ ୧୯୬୦ ପୂର୍ବର ଏହି ୨୦ ବର୍ଷ ଆମ ପାଇଁ ବଡ଼ କଷ୍ଟଦାୟକ ଥିଲା। କାହା ପାଖରେ  ପଇସା ହିସାବରେ ଅଣେ ବି ନଥିବା ବଡ ଭାଇ ମାଇନର ସ୍କୁଲ ପଢ଼ିଲେ ୧୯୪୦ରେ ସ୍କୁଲ ଫି' ଦେବାକୁ ହେବ, ମଝିଆ ଭାଇ ମାଇନର ପଢ଼ିଲେ ୧୯୪୭ରେ, ତାଙ୍କର ମଧ୍ୟ ସ୍କୁଲ ଫି' ଦରକାର ଏବଂ ମୁଁ ମାଇନର ପଢ଼ିଲି ୧୯୪୯ରେ। ଗୋଟିଏ ଅଭାବଗ୍ରସ୍ତ ପରିବାରରେ ରହି ବାପା କି କଲବଲ ହୋଇଛନ୍ତି, ତାହା ମୁଁ ଏବେ ଭାବେ। ସେ ସମୟରେ ଏକା ବେଳକେ ୩ଟା ପିଲାଙ୍କୁ କେ ଡେଜଣ ପଢ଼ାଇଛନ୍ତି? ବାପା କୁପ କଣ୍ଟ୍ରାକ୍ଟି ନେଲେ ତାଙ୍କ ତାଳପାଟଣା ମାମୁମାନଙ୍କ ଠାରୁ ଶିଖି। ସାଉକାର ଘରେ ମା'ର ସବୁ ସୁନା ବନ୍ଧା ପକାଇଲେ। ଆଉ ମୁକୁଳାଇ ପାରିନାହାନ୍ତି। ଆମେ ପୁଅମାନେ ବାପାଙ୍କୁ କି ସୁଖ ଦେଇଛୁ? ଭଉଣୀ ମାଗୁଣି ନାନିର ସୁନା ମଧ୍ୟ ମାଗିକରି ବନ୍ଧା ପକେଇଛନ୍ତି, ଅବଶ୍ୟ ମୁକୁଳେଇ ତାକୁ ପରେ ଫେରସ୍ତ ଦେଇଛନ୍ତି। ୧୯୫୦ ମସିହା ବେଳକୁ ବାପା ଗୋଟିଏ ହରକୁଲସ୍ ସଇକେଲ କିଣିଲେ। ଆଗରୁ ଚାଲି ଚାଲି ଯାଉଥିଲେ ଗଡକୁ। କୁପ୍ ଜାଗାକୁ। ସାଇକେଲ ଆସିବାରୁ ମୁଁ ସାଇକେଲ ଚଢ଼ା ଶିଖିଲି ବୋଧେ ୧୯୫୨ ମସିହାରେ। ସାଉକାର ଘର ରାଜ ଏବଂ ଗମେଇର ବାସୁ (ଲଡୁ ନନାଙ୍କ ଭଣଜା)ଙ୍କ ସାହାଯ୍ୟରେ ପାଟୁଳି ସାହି ପଡିଆରେ  ସାଇକେଲ ଚଢ଼ା ଶିଖିଲି।

୧୯୫୦ ମସିହାର କଥା। ମୁଁ ମୋ କ୍ଲାସମେଟଙ୍କ ସାଙ୍ଗରେ ସନ୍ଧ୍ୟା ୫ଟା ବେଳେ ଫେରିଲାବେଳେ ଗୋଟିଏ ଜିପରେ କିଏ କିଏ ବସିଥିଲେ। ସେଥିରେ ଥିଲେ ସାନ ଗୋରଡାର ଭବାନି ପଟ୍ଟନାୟକ। ଆମକୁ ଦେଖି ଜିପରୁ କହିଲେ 'ପିଲେ ବସିପଡ ଯିବା'। ଆମେ ସବୁ ଆନନ୍ଦରେ ଜିପରେ ବସିଲୁ। ଜୀବନରେ ଏହା ପ୍ରଥମ ଘଟଣା। ଗାଁ ପାଖରେ ଆମକୁ ଓହ୍ଲାଇ ଜିପ ଗଲା। ମୁଁ ଗଡ ଜିତିଲା ପରି ଆନନ୍ଦରେ ଘରକୁ ଗଲି ଏକଥା ମା'କୁ କହିବା ପାଇଁ। ମାତ୍ର ସେଦିନ ଘରର ଯେଉଁ ଦୃଶ୍ୟ ଦେଖିଲି ମୋର ସବୁ ଆନନ୍ଦ ଉଭେଇଲା। କଥା ହେଉଛି ବାପା ତାଙ୍କର ମାମୁଝିଅ ଅନ୍ନପୂର୍ଣ୍ଣାଙ୍କ ଠାରୁ କିଛି ଟଙ୍କା ସୁଧକୁ ଆଣିଥିଲେ। ସୁଝିପାରୁନାହାନ୍ତି। ସେଥିପାଇଁ ପାଟିତୁଣ୍ଡ! ତେଣୁ ବାପା କି କଷ୍ଟ କରିନାହାନ୍ତି ଆମମାନଙ୍କ ପାଇଁ!

ବାପାଙ୍କ ଜୀବ ଦଶାରେ ତାଙ୍କର ହାରପିସ୍ ବେମାର ଜୋର ହୋଇଥିଲା ମୁହଁରେ, ବେକରେ ବଡ ବଡ ଫୋଟକା ହୋଇଗଲା। ଔଷଧ ଖାଇ ନକମିବାରୁ ବଡ ଭାଇ କଟକରେ ଦେଖାଇଲେ। ଡାକ୍ତର ରଘୁନାଥ ସାହୁ ଦେଖିଲେ। ସେହି ପୁରୁଣା ଔଷଧ ରେଡିସଲ ଏବ୍, ମାକ୍ରାବିନ ଏବ୍ ପ୍ରେସ୍କ୍ରାଇବ୍ କଲେ। ସମୟକ୍ରମେ ତାହା ଭଲ ହେଲା। ଏଇଟା ୧୯୬୫-୬୬ର କଥା। ୧୯୭୯ ମସିହାରେ ବାପାଙ୍କର ପ୍ରୋଷ୍ଟେଟ ଅପରେସନ କରାଇଥିଲୁ କଟକ ମେଡିକାଲରେ ଅପରେସନ କରିଥିଲେ ପ୍ରଫେସର ବାଲଚନ୍ଦ୍ର ଅଗ୍ରୱାଲ। ୧୯୯୦ ମସିହା ବେଳକୁ ମୁଁ ନୟାଗଡ PWD, SDO ଥିଲି। ଏ ସମୟରେ ବାପାଙ୍କୁ T.B ହେଲା। ଘରେ ରହି ଔଷଧ ଖାଇବାରୁ ଭଲ ହେଲା।

ନୟାଗଡ଼ରେ PWD, SDO ହେବାଟା ବାପାଙ୍କୁ ବହୁତ ଆନନ୍ଦ ଦେଲା ସେ ସବୁବେଳେ ନୟାଗଡ ଆସି ନୟାଗଡର ଅନ୍ୟାନ୍ୟ ଅଫିସରଙ୍କୁ ଦେଖିଛନ୍ତି। ତାଙ୍କ ପୁଅ ତାଙ୍କ ସଙ୍ଗେ ସମାନ ଏ ଧାରଣା ତାଙ୍କର ଆନନ୍ଦର ମୂଳ କାରଣ।

ମୋର ମା' ଥିଲେ ସର୍ବସଂହା। ବାପାଙ୍କର କଟୁକ୍ତି ହଜମ କରିବା ସଙ୍ଗେ ଆମ୍ଭମାନଙ୍କୁ ବଢେଇବା ତାଙ୍କର ନିତ୍ୟ ନୈମିତିକ କାର୍ଯ୍ୟ ଥିଲା। ଆମେ ଗାଁରେ କରିଥିବା ଘର ୫ ବଖରା ଥିଲା ଟାଇଲ ଛାତ ଘର। ମା' କୁହେ ଆମେ କ'ଣ ଆମ ଘର ଦୁଆରୀ କେଉଟ ଘରଠୁ ଊଣା ? ସେ ଛାତ ଘର କଲା ଆଉ ତମେ ଟାଇଲ ଘର କଲ। ମୋ ପାଇଁ ଏ ପ୍ରଶ୍ନ ଲଜ୍ଜାଜନକ ଥିଲା। ଟଙ୍କା ଯୋଗାଡ କରି ଏଡେବଡ ଛାତ ପକାଇବା ସହଜ ସାଧ୍ୟ ନଥିଲା। କିନ୍ତୁ ମୋ ମନରେ ଅବସୋସ ରହୁଥାଏ। ମୁଁ ଭୁବନେଶ୍ୱର କିମ୍ବା ଅନ୍ୟ କେଉଁଠାରେ ଥିଲେ ମଧ୍ୟ ବାତ୍ୟା ପବନ ହେଲେ ମୁଁ ଚିନ୍ତାଗ୍ରସ୍ତ ହୁଏ ଆମ ଘର ଟାଇଲ ଉଡି ଯାଇନଥିବ ତ! ମୁଁ ଅବସର ନେଲା ପରେ ପୁତୁରା ପ୍ରଭାତ ଘରର ଟାଇଲ ବଦଳାଇ ଢଳେଇ ଛାତ ପକାଇଲା। ଏଥିପାଇଁ ମୁଁ ସାହାଯ୍ୟ କରିଛି।

ମୋର ଉପର ଭାଇ ଦଣ୍ଡପାଣି B.T. କରି ସରକାରୀ ପ୍ରାଇମେର ଶିକ୍ଷକ ଥିଲେ। ଘର ତିଆରି ତାଙ୍କର ଉତ୍ସାହ ଏବଂ କର୍ମ ଉଲ୍ଲେଖଯୋଗ୍ୟ। ସେ ନୟାଗଡ ଟାଉନ ପାଖ ପୁରୁଷୋତ୍ତମପୁରରୁ ଆନ୍ଧ୍ର ଟାଇଲ ଆଣି ଘରେ ପକାଇଲେ। ୧୯୬୩ ମସିହା ବେଳକୁ ଭାଇଙ୍କୁ T.B. ହେଲା। ତାଙ୍କୁ ଚାନ୍ଦପୁର T.B. ହାସପାତାଳରେ ରଖିବାକୁ ପଡିଲା ମାସକୁ ଟ୫୦ ଖରଚ। ମନ୍ତ୍ରୀ ବୀରେନ ମିତ୍ରଙ୍କଠୁ ସୁପାରିସ ଆଣି ଆଉଟ ଅଫ୍ ଟର୍ଣ୍ଣ ହିସାବରେ ସିଟ୍ ମିଳିଲା। ମାତ୍ର ୩ ମାସର ଚିକିତ୍ସାରେ ସେ ଭଲ ହେଲେ। ୧୯୭୬ ମସିହା ବେଳକୁ ସେ ଖୋରଧା ଶିକ୍ଷା ଜିଲ୍ଲାରୁ ବଦଳି ହୋଇ

ନୟାଗଡ ଶିକ୍ଷା ଜିଲ୍ଲାର ଆମ ଗାଁ ପାଖ ନାଗମୁଣ୍ଡଳୀରେ ଶିକ୍ଷକ ରହିଲେ। ଭାଇ ମାନସିକ ବ୍ୟାଧିରେ ପୀଡିତ ହେଲେ, ବାପା ମା' ଚିନ୍ତିତ ହୋଇପଡିଲେ। ମୁଁ ତାଙ୍କୁ ନେଇ ଡାକ୍ତର ପାର୍ଥ ରାଓଙ୍କୁ ଦେଖାଇ ଭଲ କଲି। ଏହା ୧୯୮୫ ମସିହାର କଥା। ସେ ସମୟରେ ଭାଇଙ୍କ ସ୍ତ୍ରୀ ଆସନ୍ନ ପ୍ରସବା। ସେହି ଭାଉଜକୁ ମୋ ଘରେ ରଖି ହାସପାତାଳରେ ଡେଲିଭରି କରାଇଲି। ମୋ ମା' ମାନସିକ ଶାନ୍ତି ପାଇଲା। ମା'ର ଶାନ୍ତି ଆସିବାରୁ ମୁଁ ଆନନ୍ଦିତ ହେଲି।

ଆମ ପରିବାରରେ ସମସ୍ତଙ୍କର ସାନ ବଡ ହୋଇ ବହୁତ ଅସୁସ୍ଥତା, ଦୁର୍ଘଟଣା ଲାଗିଥିଲା। ସେ ସମୟ ଅତିକ୍ରାନ୍ତ। ଭଗବତ ପ୍ରେରଣା ଓ ଆଶୀର୍ବାଦ ଜୀବନକୁ ସାହସ ଦେଇଛି। ଭାଇ ୧୯୫୫ରେ ସପ୍ଲିମେଣ୍ଟାରୀ ପରୀକ୍ଷାରେ ମାଟ୍ରିକ ପାସ କରିଥିଲେ। ସେ ବେସପ୍ଲିମେଣ୍ଟାରି ପରୀକ୍ଷା ପାଇଁ ପୁରୀ ଯିବାକୁ ପଡୁଥିଲା। ଭାଇ ମାଛ ଧରାରେ ଖୁବ୍ ପାରଙ୍ଗମ। ବିଲରେ ମୁଗୁରା ବସାଇବା, ପାଣିରୁ ପଙ୍କ ଚିପି ମାଛ ଧରିବା ତାଙ୍କୁ ଭଲ ଜଣା। ତାଙ୍କର ଜୀବନ କାଳ (୧୯୩୬-୨୦୨୦)

ବଡଭାଇ ମଦନ ମୋହନ ଦୋରାଙ୍କ ଜନ୍ମ ୧୯୨୮ ମାର୍ଚ୍ଚ ୨୦ ତାରିଖ। ଅଭାବ ଅନାଟନରେ ଡେରିରେ M.E ପାସ୍ କଲେ। ସେ ନୟାଗଡ ହାଇସ୍କୁଲରେ ପଢିଲେ ୧୯୪୪ ମସିହାରେ। ହଷ୍ଟେଲରେ ରହିଲେ। ମୁଁ ତାଙ୍କଠାରୁ ୧୧ ବର୍ଷ ସାନ, ମୁଁ ହେତୁ ପାଇଲା ବେଳକୁ ତାଙ୍କ ବୟସ ହୋଇଥିବ ୧୩/୧୪ ବର୍ଷ। ଭାଇଙ୍କର ବ୍ୟକ୍ତିତ୍ୱ ବଡ ଜୋର ଥିଲା। ସମସ୍ତେ ତାଙ୍କୁ ମାନନ୍ତି। ରୋକ୍ ଠୋକ୍ କଥା ପାଇଁ କହନ୍ତି। ସେ I.A.ପଢିବା ପାଇଁ ସାଉକାର ଘର ଦୁଇଭାଇ ମାସକୁ ଜଣେକେ ଟ. ୨୦ ଲେଖାଏଁ ଗୋଟିଏ ବର୍ଷ ଦେଇଥିଲେ। ଯାହାଫଳରେ ସେ ୪୦ ଟଙ୍କାରେ କଟକ କଲେଜରେ ପଢିଲେ। ତା' ପରେ ଟ୍ୟୁସନ କରି I.A.ର ଦିତୀୟ ବର୍ଷ ଏବଂ B.A.ର ଦୁଇବର୍ଷ ପଢିଲା। ସେ B.A. ପାସ୍ କଲେ ୧୯୫୨ରେ। କିଛି ବର୍ଷ ବୋର୍ଡ ଅଫ୍ ରେଭିନ୍ୟୁରେ କ୍ଲର୍କ କାମ କରି ହେଲେ ନନଗେଜେଟେଡ୍ ଆସିଷ୍ଟାଣ୍ଟ ସେଟ ଲମେଣ୍ଟ ଅଫିସର। ୧୯୬୫ରେ ସବଡେପୁଟି କଲେକ୍ଟରକୁ ପ୍ରମୋସନ ପାଇଲେ। ବିଭିନ୍ନ ପଦରେ କାମ କରି ୧୯୮୬ରେ ଡେପୁଟି କଲେକ୍ଟର ପଦରୁ ଅବସର ନେଲେ।

ମୁଁ ଷଷ୍ଠ ଶ୍ରେଣୀରେ ପଢୁଥାଏ। ୧୯୫୧-୫୨ ମସିହାରେ ଭାଇ ପଠାଇଲେ ଇଂରାଜୀ ବହି। step to English। ବହିଟି ମୋତେ ଗାଁ ସର୍ବରାକାର ଦେଲେ। ସେ କଥା ମୋର ମନରେ ଆଜିଯାଏଁ ଅଛି। ବଡଭାଇଙ୍କ ପରି ମୁଁ ମଧ୍ୟ ଇଂରାଜୀରେ ଭଲ କରୁଥିଲି। ୯ମ ଶ୍ରେଣୀରେ ପଢିଲା ବେଳର ଶେଷ ଆଡକୁ ପଠାଇ ଥିଲେ ତ୍ରିକୋଣମେଟ୍ରି ଏବଂ ମେନୁରେସନ ବହି। ଏ ବହି ଆଣିବା ପାଇଁ ମୁଁ ଚାଲି ଚାଲି

ଯାଇ ନୟାଗଡ ବାଞ୍ଛା ହୋଟେଲରୁ ସଂଗ୍ରହ କଲି। ସେହି ଦୃଶ୍ୟ ମୋର ମନେ ଅଛି। ଘରେ ୨ଟା ବେଳେ ପହଞ୍ଚି ଭାତ ଖାଇଲି।

୧୯୫୬-୫୭ରେ ମୋର ମାଟ୍ରିକ ଶେଷ ବର୍ଷ। ମୁଁ ହଷ୍ଟେଲରେ ରହିଲି। ମାସରୁ ୨୦ଟଙ୍କା ଡାକରେ ସେ ପଠାଉଥିଲେ।

ମୋର ଇଞ୍ଜିନିୟରିଂ ସ୍କୁଲର ପାଠ ପଢା ସମୟ ୧୯୫୭-୬୦ ମାସକୁ ୪୫ ଟଙ୍କା ପଠାଇବାରୁ ମୁଁ ଡି ପ୍ଲୋମା ପାଠ ପଢିଲି। ଏହି ସମୟଗୁଡିକ କେତେ କଷ୍ଟଦାୟକ ଥିଲା। ଆମ ପଢା ସରିଲା ବେଳକୁ ଗାଁରେ ନୂଆ ଘର କରିବା ଆଉ ଏକ ସମସ୍ୟା ହୋଇ ଆସିଲା। ସମସ୍ତେ ଲାଗିଲୁ ୧୯୬୪ ବେଳକୁ ଘର ସରିଲା ଏବଂ ଆମେ ଗାଁରୁ ଉଠିଆସିଲୁ।

ଭାଇ ସେଟଲମେଣ୍ଟ କ୍ୟାମ୍ପରେ A.S.O. ହୋଇ କାର୍ଯ୍ୟ କରୁଛନ୍ତି। ସବ୍ ଡେପୁଟି ପ୍ରମୋସନ ପାଇଲେ ଚଷାପଡା କ୍ୟାମ୍ପରେ କାମ କଲାବେଳେ। ଏହି ଚଷାପଡା କ୍ୟାମ୍ପକୁ ସେ ସମୟର ନୂଆ ହୋଇ I.A.S ପ୍ରାପ୍ତ ପ୍ୟାରିମୋହନ ମହାପାତ୍ର ଟ୍ରେନିଂ ପାଇଁ ଆସୁଥିଲେ। ଭାଇ ଭଞ୍ଜନଗର S.D.O ଅଫିସରେ ରେଭିନ୍ୟୁ ଅଫିସର ଥିଲେ। ତାଙ୍କ S.D.O.ଙ୍କର ହଠାତ୍ ମୃତ୍ୟୁ ହେବାରୁ ସରକାର ଏକ ଆଦେଶନାମା ବଳରେ ତାଙ୍କୁ S.D.O. ପଦରେ କାର୍ଯ୍ୟ କରାଇବାକୁ ଆଦେଶ ଦେଲେ। କିଛି ମାସ ପରେ ଆଉ ଜଣେ ଡେପୁଟି କଲେକ୍ଟର ଯେକି ଭାଇଙ୍କ ଠାରୁ କ୍ୟାଡରରେ ସିନିୟର ସେହି ଅଫିସରେ ଯୋଗଦେଲେ। ସେ ଚାହିଁଲେ ସେ ଯେହେତୁ ସିନିୟର S.D.O. ପଦକୁ ମଧ୍ୟ ଚାର୍ଜ ନେବେ। ଅନେକ କିଛି ଅଫିସର ଏ ମତକୁ ଗ୍ରହଣ କଲେ। ଭାଇ ମନା କଲେ। କହିଲେ, ସରକାରଙ୍କ ବିନା ନୋଟିଫିକେସନରେ S.D.O. ଦାୟିତ୍ୱ ଦେବା ସମୀଚୀନ ନୁହେଁ। କିଛିଦିନ ପରେ ସରକାର ବିଧିବଦ୍ଧ ଭାବରେ ନୂଆ S.D.O. ନିଯୁକ୍ତି ଦେଲେ।

ମୋର ଏକମାତ୍ର ଭଉଣୀ ଡାକ ନାମ ମାଗୁଣି। ଦୁଇଟି ଝିଅ ମଲାପରେ ସେ ଜନ୍ମ ହୋଇଥିବାରୁ ମା' ତାକୁ ବହୁତ ଗେହ୍ଲା କରିଥିଲା।



# ମୋର ଶିକ୍ଷା ଏବଂ ଚାକିରି

୧୯୪୫ ମସିହାରେ ମୁଁ ଛଅବର୍ଷ ବୟସରେ ଶିଶୁଶ୍ରେଣୀରେ ପଢିଲି। ଆମ ଗାଁରେ ଥିଲା ମାତ୍ର ଦୁଇଟି ଶ୍ରେଣୀ, ଶିଶୁ ଆଉ ପ୍ରଥମ। ତା' ପରେ ସାନ ଗୋରଡା ଗଲୁ ୨ୟ ଏବଂ ୩ୟ ପଢିବାକୁ। ଏବେ ଗାଁରେ L.P.ସ୍କୁଲ ହେଲା, ମାଇନର ସ୍କୁଲ ହେଲା ଏବଂ ହାଇସ୍କୁଲ ମଧ୍ୟ ହେଲାଣି। ସାଉକାର ଘର ଲଡୁକିଶୋର ଏବଂ କୀର୍ତ୍ତିଚନ୍ଦ୍ର ତାଙ୍କ ବାପାଙ୍କ ନାମରେ କୁବେର ଲୋକନାଥ ହାଇସ୍କୁଲ ପ୍ରତିଷ୍ଠା କରିଛନ୍ତି କିଛି ବର୍ଷ ତଳେ। ଏହି ସ୍କୁଲ ଠାରୁ ମାତ୍ର ୪୦୦ ଫୁଟ ଦୂରରେ ଆଙ୍ଗସିଙ୍ଗ ପଞ୍ଚାୟତ ପ୍ରତିଷ୍ଠା କରିଛି ଆଉ ଗୋଟିଏ ହାଇସ୍କୁଲ। ଶରଣକୂଳରେ କଲେଜ ଅଛି। ନୟାଗଡରେ ଅଛି ୧୯୬୦ ମସିହାରୁ। ଶିଖରପୁରରେ ଥିଲା L.P. ସ୍କୁଲ ବଡଯାଗା, ବହୁତଗୁଡିଏ ଘର। ଏଠି ଗାଁର ଗୋଟେ କୋଠଘର ଥିଲା। ଏହି କୋଠଘରେ ଆରମ୍ଭ ହେଲା ପ୍ରସ୍ତାବିତ ମାଇନର ସ୍କୁଲ ୧୯୪୯ ମସିହାରେ। ମୋ ଭାଗ୍ୟକୁ ଏହି ସ୍କୁଲ ଖୋଲିଲା। ଗାଁର ଉଦ୍ୟୋକ୍ତାମାନଙ୍କୁ ଛାଡି କାର୍ଜି ବନମାଳି ଦାସ ଏହି ସ୍କୁଲର ଦାୟିତ୍ୱ ନେଲେ ୧୯୫୧ ମସିହାରୁ। ସେବେଠୁ ଚାଲି ଆସିଅଛି ଶିଖରପୁର ବନମାଳି ମି.ଇ ସ୍କୁଲ। ଅଲଗା ଯାଗାରେ ୩ଟି କ୍ଲାସକୁ ନେଇ ଗଢାଯାଇଛି ଶିଖରପୁର ଦଧିବାମନ ହାଇସ୍କୁଲ।

ଶିଖରପୁର ମାଇନର ସ୍କୁଲ ୭ମ ଶ୍ରେଣୀ ପରୀକ୍ଷା ଦେଲୁ ଶରଣକୁଳରେ ୧୯୫୩ ମସିହାରେ। ସେଥିପାଇଁ ପରୀକ୍ଷା ସମୟର ଶେଷ ୧୦ ଦିନ ସ୍କୁଲ୍ ରେ ରାତିରେ ରହିଲୁ। ଶିଖରପୁର ଗାଁର ବାଞ୍ଛାପଣ୍ଡା ଯେକି ଶିଖରପୁର ଦଧିବାମନ ମନ୍ଦିର ପୂଜାରୀ ଆମକୁ ରୋଷାଇ କରି ଦେଉଥିଲେ ଦୁଇଓଳି। ଆମେ ପିଲା ଥିଲୁ ବୋଧେ ୧୨ ଜଣ। ସେ ଖାଇବା ପାଇଁ ସବୁ ପରିବା ମିଶାଇ ଡାଲମା, ଗୋଟା ଆମ୍ବର ବେଶର କରୁଥିଲେ। ବହୁତ ଭଲ ଲାଗିଲା ଖାଇବାକୁ। ଶରଣକୁଳରେ

ମାଇନର ସ୍କୁଲର ଶେଷ ପରୀକ୍ଷା ହେଲା ଶରଣକୁଳ ହାଇସ୍କୁଲ ତତ୍ତ୍ୱାବଧାନରେ। ଏଠି ପରୀକ୍ଷା ଶେଷଦିନ ଗୋଟିଏ ଖାଇବା ବନ୍ଦୋବସ୍ତ ହୋଇଥିଲା। ଭୋଜିଟା ବଡ ଭଲ ହୋଇଥିଲା। ହାଇସ୍କୁଲର ଶିକ୍ଷକମାନେ କ'ଣ ଦରକାର ବୋଲି ପଚାରି ବୁଝୁଥିଲେ।

ଶରଣକୁଳ ହାଇସ୍କୁଲରେ ୧୯୫୩ରୁ ୧୯୫୭ ପର୍ଯ୍ୟନ୍ତ ପଢିଲି। ହେଡମାଷ୍ଟର ଥିଲେ ଶ୍ରୀଯୁକ୍ତ ରଘୁନାଥ ମିଶ୍ର। ଓଭରସିଅର ପଢିବି ବୋଲି ଅଙ୍କ ଅପସନାଲ ନେଲି। ବଡଭାଇ ଏକଥା ଆଗରୁ କହିଥିଲେ। ମୋର ସବୁ ଭଲ ହେଉଥିଲା। ଅଙ୍କ ଅପସନାଲରେ ମୁଁ ବହୁତ ଭଲ କରୁଥିଲି। ମାତ୍ର ଦୁର୍ଭାଗ୍ୟ ମୋତେ ଗୋଡାଇଲା। ମାଟ୍ରିକ୍ ରେଅଙ୍କ ଅପସନାଲ ପରୀକ୍ଷାରେ ଗୋଟିଏ ପ୍ରଶ୍ନ 'ହାଇଟ ଆଣ୍ଡ ଡିଷ୍ଟାନସ' ପଛରେ ପଡି ସବୁ ସମୟ ନଷ୍ଟ କଲି। ଯାହାଫଳରେ ମୋତେ ମିଳିଲା ମାତ୍ର ୫୩। ମାତ୍ର ମୋର ଜ୍ଞାନ, ପରିଶ୍ରମରେ ମୁଁ ୯୦-୯୫ ପାଇବା କଥା। ଏହାର ପରିଣତି ମୋ ପାଇଁ ମହଙ୍ଗା ପଡିଲା। ମୋର ମାଟ୍ରିକ ନମ୍ବର ୪୩୦ ରହିଲା। ଅଙ୍କ ଅପସନାଲରେ ୯୦ ଖଣ୍ଡେ ରହିଥିଲେ ମୋ ନମ୍ବର ରହିଥାନ୍ତା ୪୭୦। ସେ ବର୍ଷ ଅଙ୍କ କମ୍ପଲସରି କଷ୍ଟ ହୋଇଥିବା ସତ୍ତ୍ୱେ ପାଇଥିଲି ୮୩ ନମ୍ବର। ସେ ବର୍ଷ ଯେଉଁମାନଙ୍କର ୪୬୦ ନମ୍ବର ଥିଲା ସେମାନେ ମାଟ୍ରିକ ପର ଶିକ୍ଷାରେ ପଢିବାକୁ ମାସିକ ଟ. ୨୦ ବୃତ୍ତି ପାଇଲେ। ମୁଁ ବଞ୍ଚିତ ହେଲି। ମୋ ସାଙ୍ଗ ଦେବରାଜ ଇଞ୍ଜିନିୟରିଂ ସ୍କୁଲର ୩ ବର୍ଷ ଯାକ ମାସିକ ଟ. ୨୦ ପାଇଲେ। ମାତ୍ର ମୁଁ ହତଭାଗ୍ୟ। ଆମ ୧୯୫୭ ମସିହା ବାଲା ଯେବେ ଦେଖାଦେଖି ହେଉ କଥା ହୁଅନ୍ତି। ମୁଁ ଆବିଷ୍କାର କରେ ମୋ ପରି ହାଇଟ ଆଣ୍ଡ ଓ ଡିଷ୍ଟାନସ୍ ରେହଇରାଣ ହୋଇଥିବା ଛାତ୍ର। ଏଥିରୁ ଜଣେ ହେଉଛନ୍ତି ବାସୁଦେବ ସାହୁ ଯେକି R&BରେCE ହୋଇ ଅବସର ନେଇଥିଲେ। ଏବେ ମୃତ।

୧୯୫୭ ମସିହାରେ ମୁଁ କଟକ ଇଞ୍ଜିନିୟରିଂ ସ୍କୁଲରେ ନାମ ଲେଖାଇଲି। ମାର୍କ ଅନୁଯାୟୀ ସିଲେକସନରେ ମୋର ସ୍ଥାନ ଥିଲା ୧୨୦। ବାଉଁଶିଆର ଦେବରାଜଙ୍କର ଥିଲା ୫୦ ଭିତରେ ଏବଂ ଚିନ୍ତାମଣିଙ୍କର ଥିଲା ୧୪୫। ସେ ବର୍ଷ ୨୦୦ ପିଲା ଆଡମିସନ ନେଲେ। ମୁଁ ବ୍ରହ୍ମପୁର ଏବଂ ଝାରସୁଗୁଡା ଇଞ୍ଜିନିୟର ସ୍କୁଲକୁ ଦରଖାସ୍ତ କରିଥିଲି ଏବଂ ଆଡମିସନ ପାଇଁ ଚିଠି ମଧ୍ୟ ଆସିଥିଲା।

ଯଦିଓ ଆମ ଏପଟୁ ଆମେ ତିନିଜଣ ଥିଲୁ ମାତ୍ର ସେ ଦୁଇଜଣ ମୋତେ ପୂରା ମିଶାନ୍ତିନି। ପ୍ରଥମ ବର୍ଷର ଶେଷ ୩ ମାସ ବେଳେ ନୂଆ ତିଆରି ହୋଇଥିବା ୩ ମହଲା ଛାତ୍ରାବାସ ଖୋଲିଲା। ୨ୟ ଏବଂ ତୃତୀୟ ବର୍ଷ ଛାତ୍ରମାନେ ନୂଆ ହଷ୍ଟେଲକୁ ଗଲେ। ସେମାନେ ରହୁଥିବା ଆଠଗଡ ଏବଂ ପ୍ରିନ୍ସ ଅଫ ଉଏଲସ୍ ହଷ୍ଟେଲକୁ

ଆମେ ବାରାକରେ ଛାତ୍ରମାନେ ଯିବା କଥା। ବାରାକ ପୂରା ଖାଲି କଲେ କାଳେ ଅନ୍ୟ କୌଣସି ବିଭାଗ ବାରାକ ନେଇଯିବ ସେଥିପାଇଁ ନିଷ୍ପତ୍ତି ହେଲା କିଛି ପିଲା ବାରାକରେ ରହିବେ ଏବଂ ଅନ୍ୟମାନେ ଉପରୋକ୍ତ ଦୁଇ ହଷ୍ଟେଲକୁ ଯିବେ। ୩ ଜଣିଆ ଦଳରେ ଲଟେରି ପ୍ରସ୍ତୁତ ହେଲା। ସମସ୍ତେ ଗ୍ରୁପ୍ କରି ନାଁ ଦେଲେ। ଦେବରାଜ ଓ ଚିନ୍ତାମଣି ମୋତେ ତାଙ୍କ ଗ୍ରୁପରେ ନମିଶାଇ ଆବୁବେକରକୁ ରଖିଲେ। ମୋତେ ଗ୍ରୁପ୍ ମିଳିଲାନି। ମୋ ପରି ଗ୍ରୁପ ପାଇନଥିବା ଥିଲେ ପତିତପାବନ ସାହାଣୀ ଏବଂ ବୀରେନ୍ଦ୍ର ପଣ୍ଡା। ତେଣୁ ଆମେ ୩ଜଣ ହତଭାଗ୍ୟ ଗ୍ରୁପ କରି ଲଟେରିରେ ଭାଗନେଲୁ। ଭାଗ୍ୟ ପ୍ରସନ୍ନ ହେଲା। ଆମେ ପାଇଲୁ ଆଠଗଡ ହଷ୍ଟେଲ। ଦେବରାଜ ଓ ଚିନ୍ତାମଣିଙ୍କର ଲଟେରି ନ ଖୋଲିବାରୁ ସେହି ବାରାକରେ ରହିଲେ। ଇଞ୍ଜିନିଅରିଂ ସ୍କୁଲ ପ୍ରଥମ ବର୍ଷଟା ମୋର ପଢା ସେମିତି ଭଲ ହେଲାନି। ବାର୍ଷିକ ପରୀକ୍ଷାରେ ପାସ ହେଲା। ଓ୍ୱାର୍କସପରେ ମାତ୍ର ୪୦ ରହିଲା। ୪୦ରୁ କମ୍ ହେଲେ ଫେଲ୍ ହୋଇଥାନ୍ତି। ଦ୍ୱିତୀୟ ବର୍ଷର ପାଠ ମଧ୍ୟ ମାର ଭଲ ହେଲାନି। ଫାଇନାଲ ପରୀକ୍ଷାରେ ଫେଲ ହୋଇଗଲି। ସପ୍ଲିମେଣ୍ଟାର ପରୀକ୍ଷାରେ ପାସ କଲି। ମାତ୍ର ଏ ପରୀକ୍ଷାରେ ବହୁତ ଭଲ କରିଥିଲି। ମାର୍କ ଆଣିପାରିନାହିଁ। ସେଥିପାଇଁ ଅବସୋସ। ୩ୟ ବର୍ଷ ପରୀକ୍ଷାରେ ମୁଁ ଭଲ କଲି। ଭଲ ପଢାପଢି ମଧ୍ୟ କରିଥିଲି। ମୋର Total mark ହେଲା ୫୩%। ମାଟ୍ରିକରେ ମଧ୍ୟ ୫୩% ଥିଲା। ମୁଁ ଦେଖିଲି ମୋର କ୍ୟାରିଅର ୫୩ ପରସେଣ୍ଟ ରହୁଛି। AMIE ପରୀକ୍ଷାରେ ମଧ୍ୟ Section Aରେ ୫୩% ଏବଂ B ରେ ୫୫% ରହିଲା। ଘାସକୁ ଛୋଟ ପାଳକୁ ବଡ ପରି। ମୋ କ୍ୟାରିଅର ସେକେଣ୍ଡ ଡିଭିଜନ ଏବଂ ଫାଷ୍ଟ ଡିଭିଜନ ମଝିରେ।

ଇଞ୍ଜିନ୍ୟିରିଂ ସ୍କୁଲ ପ୍ରଥମ ବର୍ଷର ପ୍ରଥମ ୯ ମାସ ମୁଁ ୬ ନମ୍ବର ବାରାକରେ ଥିଲି। ସେ ବର୍ଷ ଏକ୍ସମାସ ଛୁଟିରେ ମୁଁ ଗାଁକୁ ଗଲିନି ମୋ ପାଖରେ ପଇସା ନଥିଲା। ରାମଲାଲ ନାମକ ଜଣେ ବିହାରୀ ବ୍ୟକ୍ତି ତା ଘରେ ରୋଷେଇ କରି ଥାଳିରେ ଅନେକ ଛାତ୍ରଙ୍କୁ ଦିଏ। ତେଣୁ ସେ ମିଲ ଖାଇ ହଷ୍ଟେଲରେ ଥିଲି। ସେତେବେଳେ ଗୋଟିଏ ସିନେମା ଆସିଥିଲା 'ପ୍ରଭାତ'କୁ। ସିନେମା ହେଲା 'ଜନମ ଜନମ କେ ଫେରେ' ତା'ର ଗୋଟିଏ ଭଲ ଗୀତ ଥିଲା, 'ଯରା ସାମନେ ତୋ ଆ ୟେଛଲିୟେ....' ଆମରି କ୍ଲାସର ଅଖିଳ ମହାନ୍ତି ଏହି ଗୀତଟିକୁ ଭଲ ଭାବରେ ଗାଏ। ମୁଁ ଶୁଣେ ଏବଂ ଇଚ୍ଛା ହୁଏ ଏହି ସିନେମା ଦେଖିବାକୁ। ମାତ୍ର ଟିକଟ ପାଇଁ ୧ ଟଙ୍କା ୪ ଅଣା ଦରକାର। ଅନେକ ଡେରିରେ ଦେଖିଲି ଏହି ସିନେମାକୁ।

କଟକ ଇଞ୍ଜିନିଅରିଂ ସ୍କୁଲ ଶିଳ୍ପ ବିଭାଗ ଅଧୀନରେ। ତେଣୁ ଇଞ୍ଜିନିଅରିଂ

ସ୍କୁଲ ପ୍ରିନ୍ସପାଲ କ୍ୱାର୍ଟର୍ସର ଶିଳ୍ପ ଡାଇରେକ୍ଟର ମାଡିବସି ରହୁଥିଲେ। ଫୁଟବଲ ପଡିଆ ପାଖରେ ନୂଆ ହୋଇ ତିଆର ହୋଇଥିବା କ୍ୱାର୍ଟର୍ସରେ ମଧ୍ୟ ଶିଳ୍ପ ବିଭାଗ ଅଫିସରମାନେ ଜବରଦସ୍ତ ରହୁଥିଲେ। ଆଠଗଡ଼ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ବସାରେ ରହୁଥିଲେ ପ୍ରିନ୍ସପାଲ ଯଦୁମଣି ନାହାକ୍ତି। ଆ ମତୃତୀୟ ବର୍ଷ ବେଳକୁ ଏସବୁ ତ୍ରୁଟି ବିଚ୍ୟୁତ ଧରା ଯିବାରୁ ପ୍ରିନ୍ସପାଲ ଯଦୁମଣି ଗଲେ ତାଙ୍କ ଉଦ୍ଦିଷ୍ଟ କ୍ୱାର୍ଟର୍ସକୁ। ସ୍କୁଲର ଅନ୍ୟ ଅଧ୍ୟାପକମାନେ ମଧ୍ୟ ତାଙ୍କ ନିର୍ଦ୍ଧାରିତ ବସାରେ ରହିଲେ।

ଇଞ୍ଜିନିଅରିଂ ସ୍କୁଲର ଫାଇନାଲ ପରୀକ୍ଷା ପରେ ମୁଁ ଗାଁକୁ ଆସିଲି। ସେ ବର୍ଷ ଜୁଲାଇ -ଅଗଷ୍ଟରେ ବନ୍ୟା ହେବାରୁ ଆମ ପ୍ରାକ୍ଟିକାଲ ଟ୍ରେନିଂ ନିଯୁକ୍ତି ଡେରି ହେଲା। ଅକ୍ଟୋବର ମାସରେ ଟ୍ରେନିଂ ପାଇଁ କାଗଜ ଆଣିଲି। ଶିଖରପୁର ପୋଷ୍ଟଅଫିସ୍ ମାଧ୍ୟମରେ ଦେବରାଜ ଓ ଚିନ୍ତାମଣିଙ୍କର ଆଦେଶ ଆସିଲା। ଆମର ପୋଷ୍ଟ ଅଫିସ୍ ଭାଲିଆଡିହ। ଭାଲିଆଡି ଆମ ଗାଁଠୁ ବିଲ ରେବିଲରେ ୨ କିମି। ମୁଁ ଯାଇ ମୋର ଅର୍ଡର ପାଇଲି। ମୋର ଅର୍ଡର ହୋଇଥିଲା କଟକ ଡିଭିଜନରେ ଟ୍ରେନିଂ ପାଇଁ। ମୁଁ କଟକ ମେଡିକାଲ କଲେଜରେ ହେଉଥିବା କୋଠାବାଡି କାମରେ ଟ୍ରେନିଂ ପାଇଁ ଯୋଗ ଦେଲି।

୧୯୫୦ ଆଗରୁ ଆମ ଗାଁ ଥିଲା ଶରଣକୁଳ ପୋଷ୍ଟ ଅଫିସ୍ ଅଧୀନରେ। ୧୯୫୦ରେ ଶିଖରପୁରରେ ପୋଷ୍ଟ ଅଫିସ୍ ଖୋଲିବାରୁ ଆମ ଗାଁ ଏହା ଅଧୀନକୁ ଆସିଲା। ପରେ ଭାଲିଲାଡିହିରେ ପୋ:ଅ: ଖୋଲି ଆମ ଗାଁକୁ ସେଠିକି ନେଲେ। କହିବାକୁ ଗଲେ ଭାଲିଆଡିହିର ପୋଷ୍ଟ ଅଫିସ୍ ଆମ କାମରେ ଆ ସେନା। ଯା ଆଗରୁ ଆମ ଗାଁରେ ପୋଷ୍ଟ କରିବା ପାଇଁ ସ୍ୱର୍ଗତ ଦଣ୍ଡପାଣି ପରିଡା ବହୁତ ଚେଷ୍ଟା କରିଥିଲେ। ମାତ୍ର ଫଳବତୀ ହେଲା ନାହିଁ। ପରେ କେଶରପୁରରେ ପୋଷ୍ଟ ଅଫିସ୍ ଖୋଲିବାରୁ ସେମାନେ ଆମ ଗାଁକୁ ତାଙ୍କ ଅଧୀନ ଭିତରେ ରହିଲେ। ଏଇଟା ଆମକୁ ସୁବିଧା ହେଲା ପାଖ ବାଟ। ଚଳଣୀ ମଧ୍ୟ ଅଛି। ଏବେ ଆମ ଗାଁରେ ଗୋଟିଏ ପୋଷ୍ଟ ଅଫିସ୍ ଆରମ୍ଭ ହେଲାଣି ୬ ମାସ ହେଲା।

କଟକରେ ଟ୍ରେନିଂ ସରିଲା ପରେ ମୋର ପ୍ରଥମ ନିଯୁକ୍ତି ହୋଇଥିଲା କଟକ ଡିଭିଜନରେ। ମାତ୍ର ୧୫ ଦିନ ଭିତରେ ମୋର ମହାନଦୀ ଓ ବିରୁପା ବ୍ରିଜ ଡିଭିଜନକୁ ପୁନଃ ନିଯୁକ୍ତି ହେଲା। ଏହା ପର ସେଇ ବର୍ଷ ଭିତରେ ମୁଁ ବିରୁପା ବ୍ରିଜ୍, ମହାନଦୀ ବ୍ରିଜ୍, ଆପ୍ରୋଚ ରୋଡ, N.H. Laboratory ଏବଂ ପରେ ଭୁବନେଶ୍ୱରସ୍ଥ N.H. Circle II ରେ କାର୍ଯ୍ୟ କରି ୧୯୬୨ରେ C.E. N ଅଫିସରେ ଯୋଗ ଦେଲି। N.H. ରୁ C.E (R&B) ଅଫିସ୍ ଆସିବା ପାଇଁ ମୁଁ ବହୁତ ଚେଷ୍ଟା କରିଥିଲି।

କାରଣ fieldରେ A.M.I.E ପରୀକ୍ଷା ଦେବାକୁ ସୁବିଧା ହେବନି। ପଢାପଢି କରି ହେବନି। ମୁଁ ୧୯୬୨ ମସିହା କଟକ କଲେଜ ଛକ ପାଖ ପାରାଡାଇଜ ମେସ୍ ରେ ରହୁଥିଲି। ସେଠି ଜଣେ ଥିଲେ କେନ୍ଦୁପତ୍ର ବ୍ୟବସାୟୀ ରାସବିହାରୀ ପଣ୍ଡା। ସେ ମୋତେ ନେଇ କରି ଗଲେ ତାଙ୍କ ସମ୍ବଲପୁରିଆ ଲୋକ ଯେକି ଚିଫ୍ ଇଞ୍ଜିନିଅର (R&B) ଅଫିସ୍‌ରେ Ast. to C.E. ଥିଲେ। ତାଙ୍କ ନାଁ ଅମ୍ବିକା ପ୍ରସାଦ ନନ୍ଦ। ରାସ ବିହାରୀବାବୁ ଅମ୍ବିକାବାବୁଙ୍କୁ ମୋ କଥା କହିବାରୁ ସେ ଚିଫ୍ ଇଞ୍ଜିନିୟରଙ୍କ ପିଏ D.K.R Pattnaikଙ୍କୁ ଚିଫ୍ ଇଞ୍ଜିନିଅର ଅଫିସ୍ ଆଣିବାକୁ ଅନୁରୋଧ କଲେ। ଏଥିରେ D.K.R Pattnaik ଗୋଟିଏ ନୂଆ ଫାଇଲ ଖୋଲି ଲେଖିଲେ। “It is proposed to bring Sri G. Dora to this office as estimator since he in reading A.M.I.E. Views of C.E.N.H required since he is in N.H. organisction.”

ଏହା ପରେ C.E.N.H. ଲେଖିଲେ S.E.N.H.-II ଙ୍କୁ ମୁଁ ପ୍ରକୃତରେ ପଢୁଛି କି ନାହିଁ। S.E N.H. ପଢୁଛି ବୋଲି ଲେଖିବାକୁ ମୋର (R&B) Officeକୁ ଯିବା କଥା। ମାତ୍ର ମୁଁ ଭାବିଲି C.E.N.H. ଅଫିସ୍ C.E. (R&B) ଅଫିସ୍ ଠାରୁପଢ଼ିବା ପାଇଁ ବେଶ ଉପଯୋଗୀ। ତେଣୁ ବଡ଼ବାବୁ ଦୈତାରୀ ରଥଙ୍କୁ କହିଲି “ଆପଣ ମୋତେ ଏଠି ରଖିଦିଅନ୍ତୁ। ମୋର ତ ଭୁବନେଶ୍ୱର ଆସିବା କଥା।” ଦୈତାରୀବାବୁ ସେହିପରି ନୋଟ୍ ଦେଲେ। ମୋତେ C.E.N.H.ରେ ପୋଷ୍ଟିଂ ପାଇଁ। ଅର୍ଡର ବାହାରିଲା। ମୁଁ N.H.ରେ ରହିଲି। C.E. (R&B) ଅଫିସରେ estimating branchର ଦୁଇଟି ସେକସନ ଥାଏ। ଗୋଟେ ହେଉଛି ରୋଡସ୍ ଏବଂ ଅନ୍ୟଟି ବିଲ୍ଡିଂ ବ୍ରାଞ୍ଚ। ଦୁଇବ୍ରାଞ୍ଚର ମୁଖ୍ୟ ହେଲେ କିଶୋର ମିଶ୍ର ବିଲ୍ଡିଂର ଏବଂ ରାସବିହାରୀ ବେହେରା ରାସ୍ତାର, କଡା ଶାସନ। ଏଠି estimator ମାନେ ତ୍ରସ୍ତ ହୋଇଥାଆନ୍ତି। ସେଠି ରୋଡସ୍ ବ୍ରାଞ୍ଚରେ estimator ଥିବା ସ୍ୱର୍ଗତ ପରୀକ୍ଷିତ ତ୍ରିପାଠୀଙ୍କୁ ଏ ଅଫିସ୍ କୁ ବଦଳି ହୋଇବା କଥା କହିବାରୁ ସେ ମନାକଲେ। କହିଲେ ଏଠିକୁ ଆସିଲେ Tourture ହେବ। ତେଣୁ C.E N.H. ଅଫିସରେ ରହିବା ଉଚିତ ମନେ କରିଥିଲି।

ମୁଁ N.H. ଅଫିସରେ ଜଏନ କଲି। ପ୍ରାୟ ବର୍ଷକ ପରେ A.B. Mohanty ଚିଫ୍ କନଷ୍ଟ୍ରକସନ ଇଞ୍ଜିନିୟର ହୋଇ ଜଏନ କଲେ। ଯୋଗୀନ୍ଦ୍ରନାଥ ମହାନ୍ତି ଯୋଗଦେ ଲେE.E. Designs (Bridges) ହୋଇ। ମୋର ସମୟ ଭଲରେ କଟିଲା। କାମର ପ୍ରେସର ନଥିଲା AMIE ପଢିବାକୁ ବହୁତ ସମୟ ମିଳିଲା, ପାଠ

ବୁଝେଇବା ପାଇଁ ଇଞ୍ଜିନିୟର ବନ୍ଧୁ ମଧ୍ୟ ମିଳିଲେ। ଥରେ C.E. A.B Mohanty ଅଫିସ୍ ପାଇଁ କିଛି ଇଞ୍ଜିନିଅରିଂ ବହି ମଗାଇବା ପାଇଁ କହିବାରୁ J.N. Mohanty ମୋତେ ସେ କଥା କହିଲେ। ମୋର ପଢା ବଢି ସାଙ୍ଗକୁ ଅନେକ ବହି ବମ୍ବେରୁ ମଗାଇଲି। ଦୁର୍ଭାଗ୍ୟକୁ ଦୋକାନୀ ମାତ୍ର ଦୁଇଟା ବହି ପଠାଇଲା। ଚିଫ୍ ଇଞ୍ଜିନିୟର ଅଫିସରେ ଗୋଟିଏ slide ଗୃହ ଥିଲା। R.C.C. design by K.L. Rao ଥିଲା। ଏ ଦୁଇଟା ମୋର ଦରକା ରରେଆସିଲା। ଆମ ସମୟରେ ସ୍ୱର୍ଗତ ଉତ୍ପଳ କୁମାର ଚାନ୍ଦ ଥିଲେ ଜୁନିଅର ଇଞ୍ଜିନିୟର ମୁଁ ତାଙ୍କ ଘରକୁ ଯାଇ ଅଙ୍କ ସବୁ ବୁଝୁଥିଲି

ମୁଁ Section A. ୩ ଥରରେ ଥରକୁ ଦୁଇଟି ଲେଖାଏଁ ଏବଂ Section-B ୪ ଥରରେ ଥରକୁ ୪ ୨, ୨, ଏବଂ ଶେଷରେ ୧ ଦେଇ ପାସ୍ କଲି। ମାତ୍ର ଦୁର୍ଭାଗ୍ୟ କି ସୁଭାଗ୍ୟ କହିହେଉନି। ମଝିରେ ଦୁଇବର୍ଷ ପରୀକ୍ଷା ଦେଇପାରିନି। ଜୁନିୟର ଇଞ୍ଜିନିଅର କାର୍ଡର ଗଠନ ପରେ ମୁଁ ପ୍ରମୋସନ ପାଇଲି। ଏହି କାର୍ଡର ସମ୍ବନ୍ଧରେ ସଂକ୍ଷେପରେ ଟିକିଏ:

୧୯୬୬ ମସିହାରୁ ଇଞ୍ଜିନିୟର ନିଯୁକ୍ତିରେ ବାଧା ଆସିଲା। P.S.C. ହେଲା ନାହିଁ। ତେଣୁ ଇଞ୍ଜିନିୟରିଂ ଆସୋସିଏସନ କହିଲା ଗୋଟିଏ ଜୁନିୟର କାର୍ଡର କରିବାକୁ ଯାହାଫଳରେ କାର୍ଡର ନିୟମାନୁସାରେ ଇଞ୍ଜିନିୟରିଂ ଗ୍ରାଜୁଏଟମାନେ ନିୟମାନୁଯାୟୀ ପ୍ରମୋସନ ପାଇପାରିବେ। ଏହି କାର୍ଡର ହେବା ବିରୁଦ୍ଧରେ ଡିପ୍ଲୋମା ଆସୋସିଏସନ ପ୍ରତିରୋଧ କଲା। ଆସୋସିଏସନର ସଭାପତି ଥିଲେ ଶାରଦା ମହାନ୍ତି ମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ଭାଇ। ଏଣେ ଯେଉଁ ଜୁନିଅର ଇଞ୍ଜିନିଅରମାନେ କାର୍ଡର ହବା ପାଇଁ ଲଢୁଥିଲେ ସେଥିରେ ମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ଜ୍ୱାଇଁ ନିଖିଳ ବିହାରୀ ଦାସ। କାର୍ଡର ଗଠନ ହେଲା। ଥିବା ଜୁନିଅର ଇଞ୍ଜିନିୟରମାନେ ପ୍ରମୋସନ ପାଇଲେ। ୧୯୮୦ ମସିହା ପରେ ଅବସ୍ଥା ଉନ୍ନତ ହେବାର କ୍ୟାଡରକୁ ବନ୍ଦ କରିଦିଆଗଲା।

ସହକାରୀ ଯନ୍ତ୍ରୀ ପଦକୁ ପ୍ରମୋସନ ପାଇଁ R.E.O.ର ଇଂଞ୍ଜିନିୟରମାନେ ସମସ୍ୟା କଲେ। ଫଳରେ ଏକ କମିଟି ବସିଥିଲା। ଏହି କମିଟି ରିପୋର୍ଟ ଦେଲା ୧୯୭୮ରେ। ରିପୋର୍ଟଟି ଏଠି ପେସ୍ କଲି ୮୦ ପୃଷ୍ଠାରେ।

କମିଟିର ରିପୋର୍ଟ ଆଧାରରେ ୧୯୮୦ ମସିହା ଜୁନ୍ ମାସରେ ଜାନକୀବଲ୍ଲଭଙ୍କ ମନ୍ତ୍ରୀମଣ୍ଡଳ ପ୍ରଥମ  କାଉନ୍ସିଲ୍ ଅଫ ମିନିଷ୍ଟରସ୍ ମିଟିଂରେ R.E.O.କୁ ଭାଙ୍ଗି ଜଳସେଚନ ଓ ପୂର୍ତ୍ତବିଭାଗରେ ସାମିଲ କରିଦେଲେ। ଯାହା ଫଳରେ ପ୍ରମୋସନର ପଥ ସୁଗମ ହେଲା।

ମୋର ଇଞ୍ଜିନିଅରିଂ ସ୍କୁଲ ସାଥୀ ଚିନ୍ତାମଣି ରଥ ଜଳସେଚନ ବିଭାଗରେ କାର୍ଯ୍ୟ କରି ଶେଷରେ ସହକାରୀ ଯନ୍ତ୍ରୀ ପଦବୀ ପାଇ ଅବସର ନେଲେ। ଦେବରାଜ ୨।୩ ବର୍ଷ ଚାକିରି କରିବା ପରେ ରିଜାଇନ କରି ମାଡ୍ରାସ ଗଲେ AMIE ପଢ଼ିବାକୁ। ସେ ଭଲ ବିଦ୍ୟାର୍ଥୀ। ତେଣୁ ଠିକ୍ ସମୟରେ AMIE ପାସ୍ କରି ଭୁବନେଶ୍ୱର ଫେରିଲେ। ସେତେବେଳକୁ ନିଯୁକ୍ତିରେ ମାନ୍ଦାବସ୍ଥା। ସେ Expressway laboratoryରେ କାମ କଲେ ଓ ଉପରେ ହାଉସିଂ ବୋର୍ଡରେ ନିଯୁକ୍ତି ପାଇଲେ ପ୍ଲାନିଂ ସେଲ ଦ୍ୱାରା ମନୋନୀତ ହୋଇ। ତା' ପରେ ସେ P.S.C. ଦ୍ୱାରା ବଛା ହୋଇ ଜଳସେଚନ ବିଭାଗରେ ସହକାରୀ ଯନ୍ତ୍ରୀ ହେଲେ। ତାଙ୍କର ଚାକିରି ସମୟ କମ୍ ହେତୁ ସେ ପ୍ରମୋସନ ପାଇବାରେ ଅସୁବିଧା ହେଲା। ସେ ସେହି ସହକାରୀ ଯନ୍ତ୍ରୀ ପଦରେ ଅବସର ନେଲେ। ମାତ୍ର ପେନସନ ହିସାବ କଲାବେଳେ ରାଜ୍ୟ ସରକାର କିଛି ସହାନୁଭୂତିକ ବିଚାର କରିବାରୁ ତାଙ୍କର ପେନସନରେ ଉନ୍ନତି ହେଲା।

ମୋର ପ୍ରଥମ ନିଯୁକ୍ତି ହୋଇଥିଲା ୧୬.୨.୧୯୬୧ରେ ଏବଂ ଅବସର ନେଲି ୩୦.୬.୧୯୯୭ରେ।

ଚାକିରିରେ ମୁଁ ପ୍ରଥମେ ଯୋଗ ଦେଇଥିଲି କଟକ I.T.I ର orientation ସେଣ୍ଟରରେ। ସେଠି J.E. ଥିଲେ ଇଂ. ନଗେନ୍ଦ୍ର କୁମାର ରାୟ ଏବଂ S.D.O ଥିଲେ ଇଂ. କାମେଶ୍ୱର ସାହୁ। ମାତ୍ର ୧୫ ଦିନ ପରେ ମହାନଦୀ ଓ ବିରୂପା ବ୍ରିଜ୍ ଡିଭିଜନକୁ ମୋର reposting ହେଲା। ଏହି ୧୫ ଦିନର ଦରମା S.D.O work charged establishmentରୁ ବିଲ୍ କରି ଦେଇଥିଲେ।

ମୁଁ Mahandi & Birupa Bridge Divisionରେ ଜଏନ କଲି ୨୫/୨/୧୯୬୧ରେ ଏବଂ ମୋର ବିରୂପା ବ୍ରିଜ ସବଡିଭିଜନରେ ନିଯୁକ୍ତି ହେଲା। ନିର୍ବାହୀ ଯନ୍ତ୍ରୀ ଥିଲେ A.C. Padhi and S.D.O ଥିଲେ M.L. Patnaik। ଜୁନିଅର ଇଞ୍ଜିନିୟରମାନେ ଥିଲେ ଭାଗିରଥି ପଣ୍ଡା, ଆର୍ତ୍ତତ୍ରାଣ ସାହୁ, ମୋହନ ପଟେଲ ଏବଂ ମୁଁ। ମୁଁ ଏହି ସମୟରୁ ଅର୍ଥାତ ୩୧/୬/୧୯୬୨ରୁ ବିରୁପା ବ୍ରିଜ୍, ମହାନଦୀ ବ୍ରିଜ, ଆପ୍ରୋଚ ରୋଡ, N.H. laboratioyରେ କାମ କରି S.E. N.H କୁ ଗଲି । ସେଠୁ C.E.N.H କୁ ଆସିଲି।

1973 ମସିହା ବେଳକୁ N.H ର ଉନ୍ନତିକରଣ କାର୍ଯ୍ୟ ସରିଲା। ଚିଫ୍ ଇଞ୍ଜିନିଅର A.B. Mohanty R.E.O ର ଚିଫ୍ ଇଞ୍ଜିନିଅର ହୋଇ ଚାଲିଗଲେ। ଏ.ସି. ପାଢୀ ହେଲେ N.H., Exprpssway ଏବଂ ଏରୋ ଇଂଞ୍ଜିନର ସମୂହ ଚିଫ୍ ଇଞ୍ଜିନିୟର।

୨୫।୧୧।୭୧ ମସିହାରେ ମୋର ନିଯୁକ୍ତି ହେଲା। ନୂତନ ଗଠିତ Bhubaneswar N.H. Divisionରେ। ନିର୍ବାହୀ ଯନ୍ତ୍ରୀ ଥିଲେ L.N. Barik। S.E ଥିଲେ ବିବେକାନନ୍ଦ ଦାସ। ଆମେ Bhubaneswar Divisionରୁ charge ନେଲୁ। ଆମ ଡିଭିଜନର ଜୁରିଡିକସନ ଥିଲା ଭୁବନେଶ୍ୱରରୁ ଗଞ୍ଜାମ ବର୍ଡର ପର୍ଯ୍ୟନ୍ତ N.H. ୪ଟି ସବଡିଭିଜନ ୧୬ଜଣ J.E। ଆମେ ଯେତେବେଳେ ଯାଇଥିଲୁ ଭୁବନେଶ୍ୱର ଡିଭିଜନକୁ ଚାର୍ଜ ନେବା ପାଇଁ, ନିର୍ବାହୀ ଯନ୍ତ୍ରୀ ଥିଲେ P.K. Rao. ପ୍ରସଙ୍ଗରେ ଏହି ଡିଭିଜନର ଆକାଉଣ୍ଟାଣ୍ଟ ନାରାୟଣ ମିଶ୍ର କହିଲେ " ଆମ ଭାତ ହାଣ୍ଡି ଆପଣ ନେଇଗଲେ"। ଆଗର N.H. ଥିଲା ୧୨ ଫୁଟ ସିଙ୍ଗଲ ଲେନ ପିଚୁ। ସେତେବେଳେ ସେମାନେ ୨୩ ଫୁଟ ଓସାର କରି ଦୁଇକଡର 5'-6" କୁ metalling କରି ଓସାର କରିଥିଲେ। ଆମେ ଚାର୍ଜ ନେଲା ପରେ ୨୩ ଫୁଟର ବିଟୁମିନସ୍ ମାକାଡମ କରି ତା ଉପରେ କାର୍ପେଟିଂ ଓ ସିଲ କୋର୍ଟ କରିଥିଲୁ। ୨୧।୦୭।୧୯୭୫ ମସିହାରେ ମୋ ଯାଗାରେ ଯୋଗ ଦେଲେ ବିପିନ ବିହାରୀ ନାୟକ। ଜାଆଁଳାରେ ଆମର ପିଚୁ ଡ୍ରମ ଷ୍ଟୋର ଥାଏ। ଗଣିବାରୁ ହେଲା ୩୦୨। ହେଲ ଆଉ ଥରେ ଗଣିବାରୁ ହେଲା ୨୯୫। ପୁଣି ଗଣିବାରୁ ହେଲା ୩୧୨। ଏ ସଂଖ୍ୟା ଗଣତିରେ ଖାପକାଉ ନ ଥିଲା । କିନ୍ତୁ ଖାତାରେ ଥିଲା ୨୯୮। ବୁଦ୍ଧି ଘର୍ଣ୍ଣକାରି work Sarkar ଲକ୍ଷ୍ମୀଧର ଦାସ କହିଲେ, ସାର ଆପଣ ବସନ୍ତୁ। ମୁଁ ଗଣି କରି କହୁଛି। ସେ ଗୋଟିଏ ଚକଖଡି ଧରି ଚିହ୍ନ ଦେଇ ଦେଇ ଗଣିବାରୁ ହେଲା ୩୧୨। ମୁଁ କହିଲି, ୩୧୨ର ରସିଦ ଦିଅ। ଅଧିକ ଅଛି ବୋଲି ଲେଖିଦେବି। ମାତ୍ର ସେ ଅନୁରୋଧ କଲେ ଲେଖ ୨୯୮ ଅଛି ବୋଲି।

ଏହାପରେ ମୁଁ C.E.N.H ରେ କାମ କରି ଡେପୁଟେସନରେ ଗଲି Food corporationକୁ। ଜୀବନର ବଡ ଖରାପ ସମୟ ଥିଲା ଏହି ପିରିୟଡ। ଜୟପୁରରେ ଥିବା ଫୁଡ କର୍ପୋରେସନ ମ୍ୟାନେଜର ମାଥ୍ୟୁଜନଙ୍କ ସାଙ୍ଗରେ ଅଯଥା ଯୁକ୍ତିତର୍କ ହେଲା। ଉଚ୍ଚ ପଦସ୍ଥ ଅଫିସରକୁ ଉତ୍ତର ଦେବା ଚାକିରି ଜୀବନର ଖରାପ ଲକ୍ଷଣ। ମାତ୍ର ଦେଢ଼ ବର୍ଷରେ R&B କୁ ଫେରିଲି। ମୁଁ F.C.I ସରିଲା ବେଳକୁ ରାୟଗଡାରେ ତିଆରି ହେଉଥିବା ଗୋଦାମ ଘର ସରିନଥିଲା। ଏହାପ ରେ ମୋର କଟକ ପୋଷ୍ଟିଂ ଭିତରେ R.E.O କ୍ୟାଡର ସମସ୍ୟାର ସମାଧାନ ପାଇଁ ଲାଗିଲି। 1980 ମସିହାରେ ଯେଉଁଦିନ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେଲେ। ସେଦିନ ହିଁ R.E.O ଭାଙ୍ଗିଗଲା ବୋଲି

ସରକାର ନିଷ୍ପତ୍ତି ନେଲେ। ଏହାପରେ ପ୍ରମୋସନ ପାଇଲୁ। ସବୁର କାହାଣୀ ଲମ୍ବା। ମୋର ଅନ୍ୟ ପୁସ୍ତକରେ ଏହାର ସୁବିସ୍ତୃତ ବିବରଣୀ ଲେଖାଅଛି। ସହକାରୀ ଯନ୍ତ୍ରୀ ପଦକୁ ନିଯୁକ୍ତି ପାଇଲା ପରେ ସରକାର ସ୍ଥିର କରିଥିଲେ ମୋର ନିଯୁକ୍ତି କୌଣସି ଇଞ୍ଜିନିଅରିଂ ସ୍କୁଲରେ ଲେକଚର ହିସାବରେ। ମାତ୍ର ଯୋଗକୁ ଆଗରୁ ମୋତେ ଚିହ୍ନିଥିବା C.E.N.H ଅଫିସରେ ଥିବା Ast. Enr. ଥିବା ଗୋରାଚାନ୍ଦ ଶତପଥୀ ମୋର BRIT ନିଯୁକ୍ତି ପାଇଁ ପୂର୍ତ୍ତ ବିଭାଗକୁ ଲେଖିଥିଲେ। ଏ କଥା ମୁଁ A.C. Padhiଙ୍କୁ କହିବାରୁ ମୋର BRIT ପୋଷ୍ଟିଂ ହେଲା। ସେଠି ମଧ୍ୟ ୮ଟା ନାଁରୁ ୩ଜଣଙ୍କୁ ମାତ୍ର ନେଲେ। ଭାଗ୍ୟକୁ M.L. Pattnaik BRIT ସେକ୍ରେଟେରି ଥିବାରୁ ସେ ମୋତେ ଆଗରୁ ଚିହ୍ନି ଥିବାରୁ ମୋତେ ରଖିଲେ। ଏଠି ଥିଲାବେଳେ ୧୯୮୩ August 31 ରେ BRIT ସଂସ୍ଥା B.D.A ରେ ପରିଣତ ହେଲା। ଭାଇସଚେୟାରମ୍ୟାନ ହୋଇ ଆସିଲେ ମିନା ଗୁପ୍ତା I.A.S.

BRIT ଏବଂ B.D.A ରେ ପ୍ରାୟ ୪ ବର୍ଷ କାମ କଲା ପରେ ମୁଁ ଗଲି ଚାରବାଟିଆ R&B subDiv.। ଏଠି ନିର୍ବାହୀ ଯନ୍ତ୍ରୀ ଥିଲେ L.M. Patra ଏବଂ ପ୍ରାୟ ୪ ମାସ ପରେ ଆସିଲେ ନିରଞ୍ଜନ ପାଣିଗ୍ରାହୀ। ଏହି ନିଯୁକ୍ତି ରମାବାବୁ (ସେତେବେଳେ M.L.A ଥିଲେ) ପ୍ରହଲ୍ଲାଦ ପଟ୍ଟନାୟକ ସେକ୍ରେଟାରୀଙ୍କୁ କହି କରାଇଥିଲେ। ଏଠି ତିନିବର୍ଷ କାମ କଲା ପରେ ମୋର ନିଯୁକ୍ତି ହେଲା ନୟାଗଡ (R & B) sub Dvn.ରେ। ଏଇଟା ମଧ୍ୟ ରମାବାବୁ କହି କରାଇଥିଲେ। ଏଠି ଥିଲେ S.D.O. ପ୍ରତାପ ପଟ୍ଟନାୟକ (୧୯୪୦-୨୦୧୯)। ସେ ପୁରୀକୁ Asst. Executive ଇଞ୍ଜିନିୟର ହୋଇଗଲେ। ତାଙ୍କ ଯାଗାରେ ପୋଷ୍ଟିଂ ହୋଇଥିଲା ରାଜକୁମାର ପାଢୀଙ୍କୁ। ମାତ୍ର ତାଙ୍କର ପୋଷ୍ଟିଂ କ୍ୟାନସଲ୍ ହେବାରୁ ନୟାଗଡରେ ମୁଁ କାମ କଲି। ୨୩ କି.ମି ବ୍ୟାପି ନୂଆ ଜଗନ୍ନାଥ ସଡ଼କ ମୋ ସମୟରେ ଉନ୍ନତୀକରଣ ହେଲା। ଏଷ୍ଟିମେଟ ମୋ ଆଗରୁ ହୋଇଥିଲା ତେଣୁ କାମ କଲାବେଳେ ବହୁତ ଅସୁବିଧାରେ ପଡିଲି। ଦୁଇ କୋଟ୍ ମେଟାଲିଂ କରି ପିଚୁ ସର୍ଫେସ୍ ଡ୍ରେସିଂ ଥିଲା ଏଷ୍ଟିମେଟରେ। ମାତ୍ର ମୁଁ କଲି ଦୁଇ କୋଟ ମେଟାଲିଂ ପିଚୁ ସର୍ଫେସ୍ ଡ୍ରେସିଂ ଏବଂ ଏହା ପରେ ପ୍ରିମିକ୍ସଡ ସିଲ୍ କୋଟ। ଏହି ସିଲକୋଟ ରାସ୍ତାକୁ ସୁନ୍ଦର ଏବଂ ଜଳ ନିରୋଧକ କଲା। ଖୋରଧା ଡିଭିଜନରେ ମୋ ସମୟରେ ଦୁଇଜଣ ନିର୍ବାହୀ ଯନ୍ତ୍ରୀ ଥିଲେ ପ୍ରଥମ ଦୁଇବର୍ଷ ଥିଲେ ଦଣ୍ଡପାଣି ସାହୁ ଏବଂ ଶେଷ ଦୁଇବର୍ଷ ଜାପାନୀବାବୁ (ସୁଧୀର କୁମାର ବିଜୟେନ୍ଦ୍ର ନାରାୟଣ)।

ମୋର ନୟାଗଡ ରହଣୀର ଶେଷ ମାସଟିର ନିର୍ବାହୀ ଯନ୍ତ୍ରୀ ଥିଲେ ପ୍ରତାପ ଚନ୍ଦ୍ର ପଟ୍ଟନାୟକ।

ଜଗନ୍ନାଥ ସଡ଼କ ଉପରେ ଏକ ବିସ୍ତୃତ ଲେଖା ଏଠାରେ ଦେଉଛି।

୧୯୩୦ ମସିହାରେ ସତାର ଖାଁ ନୟାଗଡର ସୁପରିଣ୍ଟେଣ୍ଡେଣ୍ଟ ଥିଲାବେଳେ ଅନେକ ରାସ୍ତା ତିଆରି କରାଯାଇଥିଲା। ସେଥିରୁ ଗୋଟିଏ ପୋଡା ଶରଣକୁଳଠାରୁ ଦର୍ପନାରାୟଣ ପର୍ଯ୍ୟନ୍ତ। ଏହି ରାସ୍ତା କ୍ରମେ ଲମ୍ବି ରଣପୁର ଯାଇ ସେଠାରୁ ଜଙ୍କିଆ ଯାଏ ଯାଇଛି। ରାସ୍ତା ଥିଲା ପାଖାପାଖି ୩୦ ଫୁଟ ଓସାର, ୫ ଫୁଟର ନୟନଯୋଡି ରାସ୍ତାର ଦୁଇପଟେ ଥିଲା। ଭୂମି ପତ୍ତନର ରାସ୍ତାର ଉଚ୍ଚତା ହାରାହାରି ୨ ଫୁଟରୁ ୩ଫୁଟ। ରାସ୍ତାର ଦୁଇକଡରେ ଆମ୍ବ, ଜାମୁକୋଳି ଇତ୍ୟାଦି ଗଛ ଥିଲା। ଆମ ପିଲାବେଳେ ଅର୍ଥାତ୍ ୧୯୪୬ରେ ଜାମୁକୋଳି ଖାଉଥିଲୁ। ସ୍ୱାଧୀନତା ପରେ ଏହି ରାସ୍ତା ପୂର୍ତ୍ତ ବିଭାଗକୁ ଆସି ମଧ୍ୟ କିଛି ଉନ୍ନତିକରଣ କାର୍ଯ୍ୟ ହେଲା ନାହିଁ। କାଭାଁ ମୋରମ ପଡେ। ୧୯୮୫ ମସିହାରେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମନ୍ତ୍ରୀମଣ୍ଡଳ ବେଳେ ଏହି ରାସ୍ତାକୁ ନୂଆ ଜଗନ୍ନାଥ ସଡକ ନାମ କରି ପୁରୀ ପର୍ଯ୍ୟନ୍ତ  କରିବା ପ୍ରସ୍ତାବ ହେଲା। ଏହି ରାସ୍ତା ରଣପୁର ନିର୍ବାଚନ ମଣ୍ଡଳୀର ମେରୁଦଣ୍ଡ ସ୍ୱରୂପ ଥିବାରୁ ବିଧାୟକ ରାମାକାନ୍ତ ମିଶ୍ର ପୂର୍ଣ୍ଣ ପ୍ରାଣରେ ସମର୍ଥନ କରି ନିର୍ମାଣ କାର୍ଯ୍ୟରେ ମନୋନିବେଶ କଲେ।

ପ୍ରସ୍ତାବିତ ସଡ଼କର ୨୪ କିମି ନୟାଗଡ (R&B) sub dvn. ସୀମା ଭିତରେ ଅଛି ଶରଣକୁଳ ଠାରୁ ଦର୍ପନାରାୟଣପୁର ପର୍ଯ୍ୟନ୍ତ। ତା' ପରେ ଖୋରଧା ସବଡିଭିଜନ ସୀମା ଆରମ୍ଭ ହୋଇ ଜଙ୍କିଆ ପର୍ଯ୍ୟନ୍ତ। ତା' ପରେ ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଅଧୀନରେ ଭୁବନେଶ୍ୱର ପୁରୀ (N.H.)ର ନରସିଂହପୁର ପର୍ଯ୍ୟନ୍ତ। ତା'ପରେ କିଛି ବାଟ N.H.ରେ ଗଲେ ପୁରୀରେ ପହଞ୍ଚିବ।

ମୁଁ ୧୯୮୭ ନଭେମ୍ବର ମାସରେ ନୟାଗଡ sub Dvn. ର ଦାୟିତ୍ୱ ଗ୍ରହଣ କରି ସେତେବେଳକୁ ରାସ୍ତାର ଅଟକଳ ସରକାରଙ୍କଠାରୁ ମଞ୍ଜୁରୀ ପାଇଥିଲା। ପ୍ରସ୍ତାବିତ ଅଟକଳରେ ଥିଲା ଦୁଇକୋଟ୍ ମେଟାଲିଂ ସଫେଇ ଡ୍ରେସିଂ, ୮ଟି କଲଭର୍ଟ ଏବଂ ପାଟୁଳି ସାହି ପାଖରେ ଥିବା  ଦୁଆଣ୍ଟ ନଈ ବନ୍ଧରେ ଏକ gauard wall  କରିବା। କାରଣ ଏହି ଯାଗାରେ ନାଗଝର ନଈର ପାଣି ଆସି ଦୁଆଣ୍ଟ ପାଣିକୁ ଭେଦ କରି ନଈବନ୍ଧ ତଥା ରାସ୍ତାକୁ ନଷ୍ଟ କରୁଥିଲା।

ମୁଁ ଅବସ୍ଥା ପର୍ଯ୍ୟବେକ୍ଷଣ କରି ଦେଖିଲି ଅଟ୍ଟକଳରେ ଅନେକ ଜିନିଷ ରହିବା କଥା। ଗାଁ ମାନଙ୍କର ଗାଈଗୋଠ ରାସ୍ତା ପାରି ହେଲା ବେଳେ ରାସ୍ତାର

ଗଡା ଯାଗାରେ ବନ୍ଧକୁ ନଷ୍ଟ କରୁଛି। ଏଠି ପଥର ପ୍ୟାକିଂ କରିଦେଲେ ରାସ୍ତା ନଷ୍ଟ ହେବନି। ସେହିପରି ଟ୍ରାକ୍ଟର ଟ୍ରକ୍ ଯେଉଁଠି ଗୋଡି ବାଲି ଆଣୁଛନ୍ତି ସେଠି ରାସ୍ତାର ବନ୍ଧ ଖାଇ ଯାଉଛି। ଏଠି ମଧ୍ୟ ରବଲ୍ ପ୍ୟାକିଂ ଦରକାର। ରାସ୍ତା ଯେଉଁଠି ପୋଖରୀର ବନ୍ଧ ହିସାବରେ ଯାଇଛି ସେଠି ମଧ୍ୟ ରାସ୍ତା ଖାଇ ନଷ୍ଟ ହେଉଛି। ଏଠି ମଧ୍ୟ ରବଲ ପ୍ୟାକିଂ ଦରକାର ମୂଳ ଏଷ୍ଟିମେଟରେ ଏପରି ବ୍ୟବସ୍ଥା ନାହିଁ। ଏଗୁଡାକ ନକରି ରାସ୍ତା ଦୃଢୀକରଣ କଲେ ଏହାର ମାନେ କିଛି ନାହିଁ। ଦେଖିଲି ଗୋଡିପଡା ଠାରୁ ଡମସାହି ପର୍ଯ୍ୟନ୍ତ ଥିବା ରାସ୍ତାର ଓସାର ମାତ୍ର ୧୬ ଫୁଟ। ଏଠି ମାଟି ପକାଇ ରାସ୍ତାକୁ ଓସାର କରିବା ଦରକାର। ସବୁ ବଡ ବିଡମ୍ବନା ହେଲା ଦୁଇକୋଟ ମେଟାଲିଂ ପରେ ଅଛି ମାତ୍ର ପିଚୁ ସର୍ଫେସ ଡ୍ରେସିଂ। ଦୁଇକୋଟ ମେଟାଲିଂ କରି ପିଚୁର spray ଗ୍ରାଉଟ୍ କଲେ ସମୟକ୍ରମେ ଡ୍ରେସିଂ ଉଠିଯିବ। ଟ୍ରକ୍ ଗଲେ ଗୋଡି ଉଠିଯିବ, ତଳପିଚୁ ତାକୁ ଧରି ରଖିପାରିବନି। ଥରେ spray Grout ନଷ୍ଟ ହେଲେ ଖାଲି ମେଟାଲିଂ ରହିବ ଏବଂ ତା' ଉପରେ ମାଡ ହୋଇ ମେଟାଲିଂ ଉଠିଯିବ। ସାଧାରଣତଃ ପିଚୁ ସଫେଇ ଡ୍ରେସିଂ କରାଯାଏ ଯେଉଁଠି ବହୁତ ଟ୍ରାଫିକ୍ ଥିବ। ସବୁବେଳେ ଗାଡି ଗଲେ ପିଚୁ ଚାପରେ ତରଳି ଗୋଡିଗୁଡିକୁ ବାନ୍ଧି ରଖିବ। କିନ୍ତୁ ଏଠି ସେ ପରିସ୍ଥିତି ନାହିଁ। ତେଣୁ spray grout ସାଙ୍ଗକୁ premixed ସିଲ୍ କୋଟ୍ ହିଁ ଏକମାତ୍ର ସମାଧାନ। ମୁଁ ଏକଥା ରମାବାବୁ M.L.Aଙ୍କୁ କହିଲି। କାରଣ ମୋ କଥାରେ ନିର୍ବାହୀ ଯନ୍ତ୍ରୀ ସରର୍ଫେସ ଡ୍ରସିଂ ଉପରେ premixed seal coat ପ୍ରସ୍ତାବକୁ ରାଜି ହେବେନି ଖର୍ଚ୍ଚ ଭୟରେ। ମୁଁ ଗୋଟିଏ ବୁଦ୍ଧି କଲି। ରମାବାବୁ ତାଙ୍କୁ କହିଲେ "ଦଣ୍ଡପାଣିବାବୁ ଆପଣ ଏବେ ଏବେ କରିଥିବା ଲେଙ୍କୁଡିପଡା ପାଖରେ ବଢିଆ ପିଚୁ କାମ ହୋଇଛି ଆପଣ ଆମ ଜଗନ୍ନାଥ ସଡ଼କକୁ ସେମିତି କରନ୍ତୁ।" ମୁହଁ ଉପରେ ଦଣ୍ଡପାଣିବାବୁ ତାଙ୍କୁ ହଁ ନ କହି ମୋତେ ପଚାରିଲେ। ମୁଁ କହିଲି ଆମର ଦୁଇ କୋଟ୍ ମେଟାଲିଂ ବଦଳରେ ଗୋଟିଏ କୋଟ୍ କରି spray grout ଉପରେ premixed seal coat କରିବା। ନିର୍ବାହୀ ଯନ୍ତ୍ରୀ ଦଣ୍ଡପାଣିବାବୁ ଚିଫ୍ ଇଞ୍ଜିନିଅରିଂ ଅଫିସ୍ ରେ ଥିବା ଆସିଷ୍ଟାଣ୍ଟ ଟୁ ସି.ଇ ବରେନ୍ଦ୍ର କୁମାର ଦାସଙ୍କୁ ପଚାରିଲେ। ଏ ବିଷୟରେ ସମାଧାନ କ'ଣ ? ବରେନ୍ଦ୍ରବାବୁ କହିଲେ, 'ରାସ୍ତା ପୁରୁଣା, କେଉଁଠି ମେଟାଲିଂ ହୋଇଛି ତ କେଉଁଠି ନାହିଁ। ନୂଆ ରାସ୍ତା କଲାବେଳେ ଦୁଇ କୋଟ୍ ମେଟାଲିଂ ନକଲେ ରାସ୍ତା ଫେଲ୍ ମାରିଲେ ଅସୁବିଧା ହେବ। ତେଣୁ ବ୍ୟବସ୍ଥା ଥିବା ଦୁଇ

କୋଟ ମେଟାଲିଂ କରନ୍ତୁ ଏବଂ ଅଧିକା କାମ 1/4 premixed seal coat କରନ୍ତୁ। ମୁଣ୍ଡରୁ ବୋଝ ଓହ୍ଲାଇଗଲା। ଦୁଇକୋଟ୍ ମେଟାଲିଂ, ସଫେଇ ଡ୍ରେସିଂ ଓ ପ୍ରିମିକ୍ସଡ୍ ସିଲକୋଟ୍ କରାଗଲା।

ଆଉ ଗୋଟିଏ କଥା ହେଲା ମେଟାଲିଂରେ ଅଟକଳରେ ବ୍ୟବସ୍ଥା ରହିଲା ୪ ଇଞ୍ଚ ଲୁଜ ମେଟାଲ ଚପାଇବା ପରେ ୩ ଇଞ୍ଚକୁ ରଖିବାକୁ ଅଟକଳରେ ୪ ଇଞ୍ଚରେ ଗୁଣାଯାଇଥିଲା। ଏହା ଅର୍ଥ ମେଟାଲିଂର ବହଳତା ୪ଇଞ୍ଚ ହିଁ ରହିବ। ମେଟାଲ ସଂଗ୍ରହ ବେଳେ ସେଥିରେ ବହୁତ ଶୂନ୍ୟ (Voids) ଥିବାରୁ ସଂଗ୍ରହ ସମୟରେ ୧.୧୨ କ୍ୟୁବିକ୍ ମିଟର ମାପ ଦେଲେ ତାହା ୧ କ୍ୟୁବିକ୍ ମିଟର ବୋଲି ଧରାଯାଏ। ଏଇଟା ଚିରାଚରିତ ନିୟମ। ତେଣୁ estimate ରେ ୪ଇଞ୍ଚ ପ୍ରୋଭିଜନ ରହିବାକୁ ମେଟାଲିଂର ମୋଟତା ୪ ଇଞ୍ଚ ହିଁ ରହିବ। ଏ ଦୃଷ୍ଟିରୁ Collection ବେଶି ହେଲା ଏବଂ ମେଟାଲିଂର ସାନ୍ଦ୍ରତା ୪ ଇଞ୍ଚ ରହିଲା।

ରାସ୍ତା ପାଇଁ ୪୫ ଲକ୍ଷ ଟଙ୍କାର ଅଟକଳ ଅନୁମୋଦନ ଆସିଥିଲା। ଏଥିରେ ୧୬ ପ୍ରତିଶତ ପ୍ରୋରଟା, ୨ ପ୍ରତିଶତ ୱାର୍କ ଚାର୍ଜିଡ୍ କର୍ମଚାରୀ ଦରମା, ୩ Contigency ଥିବାରୁ ପ୍ରକୃତ ରାସ୍ତା ଖର୍ଚ୍ଚ ହେଉଛି ୩୬ ଲକ୍ଷ। କାମ ସରିଲା ପରେ Rivised estimate ପହଞ୍ଚିଲା ପାଖାପାଖି ୬୦ ଲକ୍ଷରେ। ମୋତେ ଜାପାନୀବାବୁ କହିଥିଲେ, ତମ ଯୋଗୁଁ ଅଟକଳ ବଢ଼ିଛି, ତେଣୁ Revised estimate କରି ଯେପରି ସରକାରଙ୍କଠୁ ମଞ୍ଜୁରି  ଆଣିବ। ଖୋରଧା ସବ୍ ଡିଭିଜନ ରାସ୍ତାର ଦର୍ପନାରାୟଣପୁର ଠାରୁ ତାଙ୍କ ସୀମା ଶେଷ ପର୍ଯ୍ୟନ୍ତ କାମ ସାରିଥିଲେ।

ମୁଁ ବର୍ଦ୍ଧିତ ଅଟକଳ ପାଇଁ ଆମ ପାଖରେ କାମ କରୁଥିବା ଜଣେ student oversear ବସନ୍ତ କୁମାର ସାହୁକୁ ଲଗାଇଲି।

ମୁଁ ଡାକିଲି ଓ ସେ ତାକୁ ଲେଖିଲେ ଏପରି କରି ପ୍ରାୟ ମାସକ ପରେ Revised estimate S.E. ଅଫିସ୍ ଦେଇ ଚିଫ୍ ଇଞ୍ଜିନିଅର ଅଫିସରେ ପହଞ୍ଚିଲା। ସେଠି estimate ଥିଲେ ଇଂ. ରାମଚନ୍ଦ୍ର ପଟ୍ଟନାୟକ। ପ୍ରାୟ ମାସେକାଳ ବସି ବସନ୍ତ ସାହୁ ରାମଚନ୍ଦ୍ରଙ୍କ ସବୁ ପ୍ରକାର ଉତ୍ତର ଦେଇ ଏଷ୍ଟମେଟ ମଞ୍ଜୁର କରାଇଲେ। ସରକାରୀ ଅନୁମୋଦନ ଆସିଲା ପରେ ଜାପାନୀବାବୁ ମୋତେ ବଧେଇ ଜଣେଇଲେ। ରାସ୍ତାକୁ ସର୍ବାଙ୍ଗ ସୁନ୍ଦର କରି ସାରିଥିବାରୁ ମୋତେ ବହୁତ ତୃପ୍ତି ମିଳିଲା।

୧୯୯୨ ମସିହାରେ ଚିଫ ଇଞ୍ଜିନିୟର ସୋମନାଥ ମିଶ୍ର ମୋତେ BDAକୁ

ଡେପୁଟେସନରେ ପଠାଇଲେ। ଏଠି ଇଞ୍ଜିନିୟର ମେମ୍ବର ଥିଲେ ବସନ୍ତ କୁମାର ତ୍ରିପାଠୀ ଏବଂ ନିର୍ବାହୀ ଯନ୍ତ୍ରୀ ଥିଲେ ବିନୋଦ ବିହାରୀ ସାହୁ ଏବଂ ପରେ ଆସିଲେ ପର୍ଶୁରାମ ବିଶ୍ୱାଳ। ସେତେବେଳେ କଳିଙ୍ଗନଗରର ରାସ୍ତା ତିଆରି ହେଉଥିଲା ଏବଂ ଏ ଅଞ୍ଚଳର ଉନ୍ନତିକରଣ (Site development) ହେଉଥିଲା। ମୁଁ ଏଠି ବହୁତ ଅସ୍ୱସ୍ତି ଅନୁଭବ କଲି। ଚାହିଁଲି ଚାଲିଯିବାକୁ। ମୋର ସଦାସର୍ବଦା ସାହାଯ୍ୟକାରୀ ରମାବାବୁଙ୍କୁ କହିଲି। ଫୁଲବାଣୀ ନର୍ଥ ସବ୍ ଡିଭିଜନରେ ଥିବା ଯନ୍ତ୍ରୀଙ୍କର ୪ ବର୍ଷ ହୋଇଯାଇଥିଲା।

## ମୋର ଫୁଲବାଣୀରେ ନିଯୁକ୍ତି

୧୯୯୩ରେ ବି.ଡି.ଏ.ରୁ ମୋର ବଦଳି ହୋଇ ନିଯୁକ୍ତି ହେଲା ଫୁଲବାଣୀ ନର୍ଥ ସବଡିଭିଜନ ଏ.ଇ.ଇ. ପଦରେ। ସେତେବେଳେ ଏମ୍.ଏଲ୍.ଏ. ଥିଲେ ଶ୍ରୀଯୁକ୍ତ ପଦ୍ମନାଭ ବେହେରା। ତାଙ୍କ ପି.ଏ. ଥିଲେ ଶ୍ରୀଯୁକ୍ତ ଗୋପୀନାଥ ବିଶୋଇ ଓ.ଏ.ଏସ୍. ସେ ଆଗରୁ ରମାବାବୁଙ୍କ ସାଙ୍ଗରେ ଚିହ୍ନା ଓଡଗାଁରେ ବି.ଡି.ଓ. ଥିଲାବେଳେ।

ତେଣୁ ବିଶୋଇବାବୁ ପଦ୍ମନାଭବାବୁଙ୍କୁ କହି ନିଯୁକ୍ତି କରାଇଲେ। ମାତ୍ର ମୁଁ ଯୋଗ ଦେଲା ପରେ ସମସ୍ତ ଠିକାଦାର ଅଡିବସିଲେ ଥିବା ଏ.ଇ.ଇ. ବେହେରାବାବୁ ରହନ୍ତୁ ବୋଲି। ସେ ଯାହା ହେଉ ମୋର ନିଯୁକ୍ତ ରହିଲା।

୧୯୯୫ରେ ଫୁଲବାଣୀ ଡିଭିଜନର ନିର୍ବାହୀ ଯନ୍ତ୍ରୀ ଜି.ବି.ଆର. ରାଓ ଦୋରାଙ୍କ ପ୍ରମୋସନ ସମୟରେ ମୋର ମଧ୍ୟ ପ୍ରମୋସନ ହେଲା। ମୁଁ ଚାହିଁଲି ଏଇଠି ରହିବି ବୋଲି, ମାତ୍ର ଠିକାଦାର ମହଲରେ ପୂର୍ବରୁ ଏ.ଇ.ଇ. ଥିବା ପୁରୁଷୋତ୍ତମ ବେହେରାଙ୍କୁ ଆଣିବାକୁ ପ୍ରୟାସ ହେଲା। ମୋତେ ଫୁଲବାଣୀରେ ନିଯୁକ୍ତି ଦେବାକୁ ରମାବାବୁ ମନ୍ତ୍ରୀଙ୍କୁ କହିଲେ ଏବଂ ମନ୍ତ୍ରୀ ରାଜି ହେଲେ। ମାତ୍ର ଦୁଇ ଏମ୍.ଏଲ୍.ଏ. ଉଦୟଗିରି ଏବଂ ବାଲିଗୁଡା ଆପତ୍ତି କଲେ ମୋର ନିଯୁକ୍ତି ପାଇଁ ଏହି ଦ୍ୱନ୍ଦ୍ୱ ଭିତରେ ଉଦୟଗିରି ଏମ୍.ଏଲ୍.ଏ. ନିଜକୁ ଫେରାଇ ଆଣି କହିଲେ 'କିଏ ନିଯୁକ୍ତି ପାଆନ୍ତୁ ମୋର ଆପତ୍ତି ନାହିଁ।' ଫୁଲବାଣୀର ଜଣେ ଠିକାଦାର ଜଣେ ପୂର୍ବତନ ଏମ୍.ପି. ଏବଂ ପୂର୍ବଦିନ ଏମ୍.ଏଲ୍.ଏ.ଙ୍କୁ ଭୁବନେଶ୍ୱର ପଠାଇଲେ ମୋର ପ୍ରସ୍ତାବିତ ନିଯୁକ୍ତି ବିରୋଧରେ। ଏ ଦୁଇ ମହାଶୟ ମାସେକାଳ ରହିଲେ ଏବଂ ନିରାଶ ହୋଇ ଫେରିଲେ। ମୁଁ ନିର୍ବାହୀ ଯନ୍ତ୍ରୀ ହିସାବରେ ଯୋଗ ଦେଲି ୨୯.୧୨.୯୫ରେ। ମୋର କାର୍ଯ୍ୟକାଳ ଥିଲା

ମାତ୍ର ଦେଢ ବର୍ଷ। ଫୁଲବାଣୀରେ ଏସ୍.ଡି.ଓ. ଏବଂ ନିର୍ବାହୀ ଯନ୍ତ୍ରୀ ହିସା ବରେ ଅନେକ କାର୍ଯ୍ୟ ନିଷ୍ଠାର ସହିତ କରିଛି। ୫ଟି ମାଇନର ବ୍ରିଜ ପାଇଁ ୬ ମାସ କାଳ ଲାଗି କାଗଜପତ୍ର କାମ ସାରିଥିଲି। ଯେଉଁ ଯେଉଁ କାମର କାଗଜପତ୍ର ସେକ୍ରେଟେରୀଏଟ୍ ରେଅଟକି ଥିଲା, ତାକୁ ଯାଇ କରେଇ ଆଣିଲି। ବାଇସିପଡା ବ୍ରିଜର ସବୁ କାଗଜ କରି ବ୍ରିଜ କାମ ସାରିଥିଲି। ମୋ ଏସ୍.ଡି.ଓ. ପିରିୟଡରେ ୧୯୯୪ରେ ଭୀଷଣ ବଢିରେ ପୁରୁଣାକଟକ ପାଖ ଲକ୍ଷ୍ମୀନାଳାର ଗୋଟେ ପିଅର ଏବଂ ୨ଟା ସ୍ଲାବ ପଡିଯାଇଥିଲା। ତାର କାଗଜପତ୍ର ଏବଂ ନିର୍ମାଣ କାମ ସାରିଲି ଏବଂ ନିର୍ଦ୍ଦିଷ୍ଟ ସମୟରେ ଭବିଷ୍ୟତରେ ବଢି ଆସିଲେ କିପରି ଖୁଣ୍ଟ ଉପୁଡି ପଡିବନି ତା' ପାଇଁ ତିନିସ୍ତରୀୟ କଟେନ୍ ୱାଲ ହେଲା। ଏଥିପାଇଁ ଚିଫ ଅଫିସରେ ଥିବା ଇଂ. ଡ. ପି.କେ. ଦାଶ ଧନ୍ୟବାଦାର୍ହ। ଦୁଇଟି ସ୍ଲାବର ଛାତ ପଡିଯାଇଥିଲା। ଶେଷ ସ୍ଲାବର ଢଳେଇ ପଡିବାର ୧୮ ଦିନ ପରେ ଲକ୍ଷ୍ମୀନାଳରେ ବଢିଆସି ସବୁ ସେଟରିଂ ଭସାଇନେଲା। ଭାଗ୍ୟକୁ କାମ ସେଟ୍ ନେଇଥିବାରୁ ସ୍ଲାବର କ୍ଷତି ହେଲାନି। ଆମେ ଗୋଟିଏ ବିପଦରୁ ବଞ୍ଚିଥିଲୁ।

ନିର୍ବାହୀ ଯନ୍ତ୍ରୀ ହିସାବରେ ଫୁଲବାଣୀ ପୋଷ୍ଟିଂ ବିଷୟରେ ଆଉ କଛି କଥା କହିରଖେ। ପୂର୍ବ ଏସ୍.ଡି.ଓ. ପୁରୁଷୋତ୍ତମ ବେହେରାଙ୍କୁ ନିର୍ବାହୀଯନ୍ତ୍ରୀ ହିସାବରେ ଆଣିବା ପାଇଁକିଛି ବଡ କଣ୍ଟ୍ରାକ୍ଟରମାନେ ଚେଷ୍ଟିତ ଥିଲେ। ମାତ୍ର ରମାବାବୁ ପୂର୍ତ୍ତମନ୍ତ୍ରୀଙ୍କୁ କହିବାରୁ ଏବଂ ଉଦୟଗିରି ଏମ୍.ଏଲ୍.ଏ. ନିରପେକ୍ଷ ରହିବାରୁ ମୋର ପୋଷ୍ଟିଂ ହୋଇପାରିଲା। ଇଂ. କେ. କାଳିଚରଣ ଦୋରା ଚାହୁଁଥିଲେ ଆସିବାକୁ ଫୁଲବାଣୀ ଡିଭିଜନକୁ। ମୋର ନିଯୁକ୍ତ ହୋଇଯିବାରୁ ସେ ଆକ୍ଷେପ କଲେ ଇଂ.ଜି.ବି. ଆର. ଦୋରା ପ୍ରାକ୍ତନ ନିର୍ବାହୀଯନ୍ତ୍ରୁଙ୍କୁ। ଏଥିରେ ମାତ୍ର G.B.R.ଙ୍କର କିଛି ରୋଲ୍ ନଥିଲା। G.B.R. Dora ଏବଂ K. Kalicharan Dora ସମ୍ବନ୍ଧରେ ଦୁଇ ଶତ୍ରୁ ହେବେ।

ମୋର ଫୁଲବାଣୀ ଚାକିରି ୪ ବର୍ଷ ବହୁତ ଘଟଣାବହୁଳ। ସନ୍ତୋଷଜନକ ଭାବରେ କାମ କରିଛି। ଏଠି ଉଲ୍ଲେଖ କରୁଛି ଦୁଇଟି ସାମାନ୍ୟ କଥା ମାତ୍ର ମନେ ରଖିବା ଭଳି। ନର୍ଥ ସବଡିଭିଜନ ଅଫିସଟି ଦକ୍ଷିଣମୁହାଁ ପୂର୍ବପଟୁ ଉଚ୍ଚ ବାରଣ୍ଡାକୁ ଆସି ଅଫିସ୍ ରୁମ୍‌କୁ ଯିବାକୁ ପଡେ। ଏସ୍.ଡି.ଓ.ଙ୍କ ଅଫିସରେ ଯେଉଁ ସିଙ୍ଗିଲ ଲିଫ କବାଟ ଲାଗିଥିଲା ତାହାର ହିଞ୍ଜ ଲାଗିଗଲା ପୂର୍ବପଟେ ଏବଂ ଲକ୍ ଥିଲା ପଶ୍ଚିମପାଖେ। ମୁଁ କବାଟକୁ ଖୋଲାଇ ପଶ୍ଚିମ ପଟେ ହିଞ୍ଜଲ ଲଗାଇ ପୂର୍ବପଟରେ ତାଲା ଲଗାଇଲି। ଫଳରେ ବହୁତ ଆଲୁଅ ରୁମ୍ ଭିତରକୁ ଆସିଲା।

ମାଧପୁର ଠାରୁଫୁଲବାଣୀ ପର୍ଯ୍ୟନ୍ତ ଯେଉଁ ରାସ୍ତା ଅଛି ସେଥିରେ କିଲୋମିଟର ଖୁଣ୍ଟ ପୋତାଯାଇ ଥିଲା। ନିୟମାନୁଯାୟୀ ପ୍ରତି ପାଞ୍ଚ କିମି ଖୁଣ୍ଟ ବଡ଼ ହେବ ଏବଂ ଅନ୍ୟ କିଲୋମିଟର ଖୁଣ୍ଟ ଛୋଟ ହେବ। ମାତ୍ର ଏପରି ନହୋଇସାନ ବଡ଼ ଖୁଣ୍ଟ ବେନିୟମରେ ଥିଲା। ମୁଁ ତାକୁ କାଢି ଯଥା ସ୍ଥାନକୁ ଆଣିଲି।

ମୁଁ ସରକାରୀ କାର୍ଯ୍ୟରୁ ଅବସର ନେଲି ୩୦/୬/୧୯୯୭ରେ। ବିଭିନ୍ନ ସମୟର ମୋର ସରକାର ନିଯୁକ୍ତିର ଏକ ତାଲିକା ଏହି ପୁସ୍ତକରେ ସଲଗ୍ନ କରୁଛି। (ପୃ.୭୮)



# ସ୍ମୃତିର ଝଲକ

ଜୀବନରେ ବହୁତ କିଛି ସ୍ମୃତି ଅଛି।
ସେଥିରୁ କିଛି ଉଲ୍ଲେଖ କରୁଛି,
ଯାହା ଅନେକ ସମୟରେ ମନରେ ଆନ୍ଦୋଳିତ ହୁଏ।

## ମା' ରଖିଥିବା ଗାଈ

ଆମେ ୧୯୬୪ ରେ ବର୍ତ୍ତମାନର କଦମମାଳ ଗହୀର ଜମି ଘରକୁ ଆସିଲୁ। ତା ଆଗରୁ ଥିଲୁ ଗାଁ ଘରେ। ଆମର ଗୋଟିଏ ଗାଈ ଥିଲା। କଳାଛିଟ ପଡ଼ିଥିବା ବର୍ଣ୍ଣ। ତା'ର ଗୋଟିଏ ମାଈ ବାଛୁରୀ ହେଲା। ସେଇଟା ନାଲିଛିଟ ବର୍ଣ୍ଣର। ତାର ୨ବର୍ଷ ପରେ ଗାଈର ଆଉ ଗୋଟିଏ ବାଛୁରୀ ହେଲା, ସେଇଟା ମା' ଭଳିଆ କଳାଛିଟ। ଏଇଟା ୧୯୫୩ ମସିହାର କଥା। କଥା ହେଲା ନାଲି ଛିଟ ଥିବା ଛଡ଼ାକୁ ଆମ ଭଉଣୀକୁ ଦିଆଯିବ। ମୁଁ ଅଶାନ୍ତ ହେଲି। ମୋର ବା ଚାରା କ'ଣ। ମୁଁ ସେତେବେଳକୁ ଶରଣକୁଳରେ ଅଷ୍ଟମ ଶ୍ରେଣୀରେ ପଢୁଥିଲି। ଦିନେ ଆମ ଗାଁର ଗାଈ ଚରାଉଥିବା ଗଉଡ଼ ଲଡୁ ଦାସ ନାଲିଛିଟ ବର୍ଣ୍ଣର ଛଡ଼ାକୁ ବାନ୍ଧି ନେବାକୁ ଉଦ୍ୟତ ହେଲା। ମାତ୍ର ଛଡ଼ା ନ ଯାଏ। ଯେତେ ମାଡ଼, ଟଣା କିଛି କାମ କଲାନି। ତେଣୁ ସେଦିନ ନବା ପ୍ରସ୍ତାବ ବନ୍ଦ ହେଲା। ପରଦିନ ବୁଦ୍ଧି ଖରଚ କରି ଗାଈ ଓ ଦୁଇଟା ବାଛୁରୀକୁ ନେଇ ପଞ୍ଚରିଡ଼ା ଗଲା। ସେଠି ପହଞ୍ଚି ନାଲିଛଡ଼ାକୁ ଭଲ କରି ବାନ୍ଧି ଗାଈ ଓ ସାନ ବାଛୁରୀକୁ ନେଇ ଗଉଡ଼ ଆମ ଗାଁକୁ ଫେରିଲା। ଗଉଡ଼ ବର୍ଣ୍ଣନା କରୁଥିଲା ନାଲିଛଡ଼ାର ଆର୍ତ୍ତ କରୁଣ ବୋବାଳି ଏବଂ ଛାଟିପିଟି ହେବା କଥା ଶୁଣି ପରେ କେତେ କାନ୍ଦିଛି।

ୟା ପରର କଥା ଆହୁରି କରୁଣ। କିଛି ଦିନ ପରେ ମା ଗାଈ ଶାଣ ରୋଗରେ ପଡ଼ି ମରିଗଲା। ମୁଁ ଖଡିଆ ବେହେରାଙ୍କଠାରୁ ଔଷଧ ନେଇଥିଲି। ତା'ପରେ ରହିଲା ମା'ଛେଉଣ୍ଡ ସାନ ବାଛୁରୀ। ମୋତେ ତ ଘାସ କାଟି ଆସେନା, ତେଣୁ ରୋଜ ବାଉଁଶ ପତର ଆଣି ବାଛୁରୀକୁ ଦେଉଥିଲି। କୁଣ୍ଡା ତୋରାଣୀ ମା ଦେଉଥିଲା। ମାତ୍ର ପ୍ରାୟ ୫/୬ ମାସ ପରେ ବାଛୁରୀ ମଧ୍ୟ ଶାଣ ରୋଗରେ ଚାଲିଗଲା। ଶାଣ ରୋଗମାନେ ବୋଧହୁଏ ବସନ୍ତ ରୋଗ।

ଏହାପରେ ଆମେ କଦମମାଳ ନୂଆଘରେ ଗାଈ ରଖିଥିଲୁ। ମା ତା ସଞ୍ଚିତ ୪୦ ଟଙ୍କା ଦେଇଥିଲା ଗାଈ ପାଇଁ। ଗାଈ ବାଛୁରୀ ଅନେକ ବର୍ଷ ଥିଲେ।

## ମୋର ଗ୍ୟାରେଣ୍ଟର ହେବା କଥା

ମୁଁ ୧୯୮୪ରୁ ୧୯୮୮ ପର୍ଯ୍ୟନ୍ତ ଚାରିବାଟିଆ R&B ସବଡିଭିଜନ-୧ରେ ଥିଲି। ଏଇଠି ଦେଖାହେଲା ମୋର ସାଙ୍ଗ ଅଜିତ କରଙ୍କ ବଡଭାଇ ଅରୁଣ କୁମାର କରଙ୍କ ସାଙ୍ଗରେ। ସେ ଚୌଦ୍ୱାର ପାଖରେ ଗୋଟିଏ କୁକୁଡା ଫାର୍ମ କରିଥିଲେ। ମୁଁ ସେ ଫାର୍ମ ବୁଲି ଦେଖିଛି। ମୋର ଶାଳକ ବାସୁ ବେକାର ଥିବାରୁ ସେ ଏହି ଫାର୍ମ କଲେ ଭଲ ହେବ ଭାବି କହିବାରୁ ରାଜି ହେଲା। ସବୁ ଆନୁଷଙ୍ଗିକ କାର୍ଯ୍ୟ କରି ଓଏଫଏସ୍ ସିରୁ ଋଣ ନେଲା ମୋଟ ୧.୭୬ ଲକ୍ଷ ୧୯୮୮ ମସିହାରେ। ବିଭିନ୍ନ କାରଣରୁ କୁକୁଡା ଫାର୍ମ ଚାଲିଲାନି। ବର୍ତ୍ତମାନ କଥା ଉଠିଲା ସେ ଟଙ୍କା ସୁଝାଯିବ କେମିତି। ମୁଁ ଥିଲି ଗ୍ୟାରେଣ୍ଟର। ମୋ ପାଖକୁ ସୁଧ ମୂଳ ସହିତ ୬ ଲକ୍ଷ ଟଙ୍କାର ଚିଠି ଆସିଲା। ମୋର ମାନସିକ ଚିନ୍ତା ବଢିଗଲା। ଛଅ ଲକ୍ଷ କିଏ ମୁଁ କିଏ। ଏଥିପାଇଁ ମୋର ସାଙ୍ଗ ଇଞ୍ଜିନିୟର କମ୍ ଆଡଭୋକେଟ୍ ନଗେନ୍ଦ୍ରନାଥ ମହାନ୍ତିଙ୍କ ଠାରୁ ଗୋଟିଏ ଚିଠି କଲି। ମୋ ମନରେ ଏତେ ଭୟ ଲାଗି ରହିଥିଲା ଯେ ଓଏସ୍ଏଫସି ନାଁ ଶୁଣିଲେ ମୋର ଦେହ କ'ଣ ହୋଇ ଯାଉଥିଲା। ଅନେକ ଦିନ ପରେ ମୋର ସାନ ଶାଳକ ଶ୍ରୀନିବାସ ଓଏସ୍ଏଫସିରେ ସମାଧାନ ଯୋଜନାରେ ମୂଳ ଦେଇ ଦେବାରୁ ଓଏସ୍ଏଫସି ପ୍ରସଙ୍ଗ ବନ୍ଦ ହେଲା। ମୁଁ ଆଶ୍ୱସ୍ତିର ନିଶ୍ୱାସ ମାରିଲି। ଭାବିଲି କେବେ କାହାର ଜାମିନି ପଡିବିନି। ମାତ୍ର ଏକଥା ରଖିପାରିଲିନି। ଭୁବନେଶ୍ୱର ହାଉସିଂ ବୋର୍ଡରେ ରହୁଥିବା ଆମ ପଡୋଶୀ ସାହୁବାବୁଙ୍କ ପୁତ୍ର ପ୍ରତାପ ବ୍ୟବସାୟ କରିବା ପାଇଁ ବ୍ୟାଙ୍କରୁ ମଟର କାର୍ ଲୋନ ଆଣିଲା ବେଳେ ତା' ପାଇଁ ଗ୍ୟାରେଣ୍ଟର ହୋଇଥିଲି। ସେଥିପାଇଁ ବ୍ୟାଙ୍କ କର୍ମଚାରୀମାନେ ଢିମା ଢିମା ଆଖିରେ ମୋତେ ଦେଖୁଥିଲେ।

## ସବ୍ ଓରିଜିନାଲ କିରାନି

ମୁଁ ୧୯୮୭ ଅକ୍ଟୋବର ମାସରେ ଯୋଗ ଦେଲାବେଳକୁ ମୋର ସବଡିଭିଜନରେ ଯେଉଁ କ୍ୟାସିୟର ଥିଲେ ମୁଁ ତାଙ୍କୁ ବିଶ୍ୱାସକୁ ନେଇପାରିଲିନି। ଥରେ ଜଣେ ସିନେମା ମାଲିକ ଦରଖାସ୍ତ କରିଥିଲେ ନିରାପତ୍ତା ସାର୍ଟିଫିକେଟ ପାଇଁ। ମୁଁ ସେ ଚିଠିକୁ ଦେଖିନି। ମାତ୍ର ଏକାବେଳେକେ ସେ ଚିଠି ସହ ଅନୁମତି ମଧ୍ୟ ମୋ ପାଖକୁ ସହକାରୀ ପୁଟଅପ୍ କଲେ। ମୁଁ ସେ ସହକାରୀଙ୍କୁ ପଚାରିଲି, ତମେ ମୋତେ ସିନେମା ହଲ୍ ଦେଖିବା ପାଇଁ ଚିଠି ନଦେଇ ଅନୁମତି ପତ୍ର ଏକା ହିସାବରେ ପୁଟଅପ୍ କିପରି କଲ? ସେ ବ୍ୟକ୍ତିଙ୍କର ବହୁତ ଗୁଡାଏ ଦୁର୍ଗୁଣ ଥିଲା। ଯୋଗକୁ

ତତ୍କାଳୀନ ଏମ୍.ଏଲ.ଏ. ଭାଗବତ ବେହେରା ତାଙ୍କୁ କାଢି ଦେବାକୁ ଏସ୍.ଇ.ଙ୍କୁ ପ୍ରସ୍ତାବ ଦେଇଥିଲେ। କାରଣ ଉକ୍ତ କ୍ୟାସିୟର work charged staffଙ୍କୁ ହଇରାଣ କରୁଥିଲେ। ଭୁବନେଶ୍ୱର ଏସ୍.ଇ. ଅଫିସରୁ ବିଷ୍ଣୁଚରଣ ଦାସ କ୍ୟାସିୟର ହୋଇ ଆସିଲେ। ମୋର ସମସ୍ତ ଗ୍ଲାନି ଦୂର ହେଲା। ବିଷ୍ଣୁ ଉତ୍ତମ ସ୍ୱଭାବର ବ୍ୟକ୍ତି ଏବଂ ବିଶ୍ୱସ୍ତ। ଏପର୍ଯ୍ୟନ୍ତ ତାଙ୍କ ସହିତ ମୋର ସୁସମ୍ପର୍କ ତିଷ୍ଠି ରହିଛି।

## ମୋ ମଝିଆ ଭାଇଙ୍କ ହାସ୍ୟ କଥା

ମଝିଆ ଭାଇ ଦଣ୍ଡପାଣି ସବୁବେଳେ ହାସ୍ୟ ଉଦ୍ରେକ କଥା କହନ୍ତି। ବେ ଳେବେଳେ ମୁଁ ସେହି କଥା ଉଖୁରାଇ ଦେଲେ ସେ କହି ଚାଲିବେ। ଗାଁରେ ଆମ ଘର ପାଖରେ ଜଣେ ସ୍ୱାଇଁ ପରିବାରର ଯୁବକଙ୍କୁ ମଧୁମେହ ହେଲା ସେ ରୋଗନିରୋଧ ମାନିଲେନି। ମନଇଚ୍ଛା ୟାଡୁସ୍ୟାଡୁ ଖାଇଲେ। ଆମ ଘର ପାଖରେ ଥିବା ରୁଷିଆ ପ୍ରଧାନ ଆଖୁ ବାରିରୁ ସେ ଭେଲା ଭେଲା ଆଖୁ ଖାଇ ଲେ।ଏହା ଦେଖି ଆଖୁ କ୍ଷେତର ମାଲିକ ରୁଷିଆ କହିଲା 'ବାବୁ ତମ ଦେହ କଷ୍ଟ ହେଲା, ଭେଲା ଭେଲା ଆଖୁ ଖାଇଲ। ଆମେ ମେହନତ କରି ଫସଲ ଉତ୍ତୁରେଇଲୁ ଆମେ ବି କଷ୍ଟ ପାଇଲୁ। ଭାଇ ଏକଥା କହି ବହେ ହସିବ ଏବଂ ଆମେ ବି ହସୁ। ଆଉ ଗୋଟିଏ କଥା- ଜଣେ ଲୋକଙ୍କର ସ୍ତ୍ରୀ କେଭେ ଚାହେଁନି ମାଛ କିଣି ପଇସା ଖର୍ଚ୍ଚ କରିବାକୁ। ମାତ୍ର ସ୍ୱାମୀ ଆଠ ଅଣାର ମାଛ କିଣି ଆଣିଲା। 'ମୁଁ ମନା କରିବା ସତ୍ତ୍ୱେ ତୁ କାହିଁକି ମାଛ କିଣିଲୁ' ବୋଲି ସେ ସ୍ତ୍ରୀ ରାଗରେ ତରକାରୀ କରି ସବୁ ତରକାରୀ ସ୍ୱାମୀ ଆଗରେ ଥୋଇଦେଲା- ଏମିତି ଅନେକ ଅନେକ ମଜା କଥା।

## ମେଷ୍ଟାଲ ରାସ୍ତା

ମୋ ଦେଖିବାରେ ୧୯୪୬-୪୭ ବେଳକୁ ଶରଣକୁଳ ଓଡଗାଁ ରାସ୍ତା ମେଟାଲ ରୋଡ ଥିଲା। ମୋରମରେ ଫେଷ୍ଟା ମେଟାଲ ରାସ୍ତାରେ ଚାଲିଲେ ପାଦକୁ କଷ୍ଟ ବହୁତ ଡେରିରେ ଅର୍ଥାତ ୧୯୮୦ ବେଳକୁ କାଁ ଭାଁ ପିଚୁ ହେଲା। ମୁଁ ପିଲାବେଳେ ମା' ସାଙ୍ଗରେ ମାମୁ ଘରକୁ ଗଲାବେଳେ ଏହି ମେଟାଲ ରୋଡରେ ଖାଲି ଗୋଡ଼ରେ ଚାଲିବା କଷ୍ଟ ଭୋଗିଛି। ଦେଖିଛି ମେଟାଲ ରୋଡରେ ଷ୍ଟିମ ରୋଲର ଚାଲେ। କାଠ ଜଳାଯାଇ ବା ଷ୍ଟିତିଆର କରି ରୋଲର ଚାଲୁଥିଲା।

## କୁସୁମୀ ନଦୀରେ ଶଙ୍ଖ

ଆଙ୍କା ଚଉରା ପାଖ କୁସୁମୀ ନଦୀରେ ପାଣି ହେତୁ ବର୍ଷାଦିନ ସ୍କୁଲକୁ ଆସୁ

ଗାମୁଛା ବଦଳି। ବଡ ବଢି ଥିଲେ ପୋଡା ଶରଣକୁଳ ଦେଇ ଶଙ୍ଖ ଉପରେ ସ୍କୁଲକୁ ଯାଉ। ଏବେ ସେ ଯାଗାରେ ଶଙ୍ଖ ହେଲାଣି ୧୫ ବର୍ଷ ହେଲା। ତା' ବାଦେ କୁସୁମୀ ନଦୀରେ ଗୁଞ୍ଜିବାରଣ ଯିବା ପାଇଁ ଗୋଟିଏ ପୋଲ ପୁଆଣିଆ ଦେଇ ନୟାଗଡ଼ ଯିବାକୁ ଆଙ୍ଗସିଙ୍ଗି ପାଖରେ ଗୋଟିଏ ପୋଲ, ସାନଗୋରଡା ଠାରେ କେଶରପୁର ଯିବାକୁ ଗୋଟିଏ ପୋଲ, ପାଟୁଳିସାହି ପାଖରେ ନୟାଗଡ ଯିବାକୁ ଗୋଟେ ପୋଲ ହେଲାଣି। ଶରଣକୁଳ ଉପର ମୁଣ୍ଡରେ ମଧ୍ୟ ୨।୩ଟା ଶଙ୍ଖ ହେଲାଣି ବିହଙ୍ଗମ ଦୃଷ୍ଟିରେ ଲକ୍ଷ କରିବା କଥା ସେବର ସମୟ ଏବଂ ଏବର ସମୟ ର କେତେଫରକ।

## ଧବଳେଶ୍ୱର ଦର୍ଶନ

ଏଇଟା ୧୯୫୦ ମସିହାର କଥା। ମୁଁ ସେତେବେଳକୁ ପଞ୍ଚମ ଶ୍ରେଣୀରେ ପଢୁଥିଲି। ସେଦିନ କାର୍ତ୍ତିକ ମାସର ସୋମବାର। ମୋ ତଳ ଶ୍ରେଣୀରେ ପଢୁଥିବା ଆମ ଗାଁର ଦଣ୍ଡପାଣି ପରିଡା ଓ ମୁଁ ଦିନ ୧୦ଟା ବେଳକୁ ଶିଖରପୁର ଏମ୍.ଇ ସ୍କୁଲ ଯିବାବେଳେ ରାସ୍ତାରେ ଦେଖିଲୁ ଆମର ଶିକ୍ଷକ ବୈଦ୍ୟନାଥ ନାୟକ (ଶିଖରପୁର) ଏବଂ ଭଗବାନ ରଥ (ଆଙ୍ଗସିଙ୍ଗ) ଏବଂ ଆମ କ୍ଲାସରେ ପଢୁଥିବା ଗୋବିନ୍ଦ ମହାପାତ୍ର (ଭଗବାନ ରଥଙ୍କ ଶଳା) ସ୍କୁଲ ବନ୍ଦ କରି ଯାଉଛନ୍ତି ଧବଳେଶ୍ୱରଙ୍କୁ ଦେଖିବାକୁ। ଆମକୁ ପଚାରିଲେ ଯିବ କି? ଆମ୍ଭେ ହଁ ମାରି ବାଟରେ ଚୈତନ୍ୟ ଭଞ୍ଜଙ୍କ ଘରେ ବସ୍ତାନି ଥୋଇ ବାହାରିଲୁ।

ବିରାଜିତ ଧବଳେଶ୍ୱର ଅଛନ୍ତି ନୟାଗଡ଼ ଠାରୁ ୫ କି.ମି ଦୂର ବିରୁଡା ଗ୍ରାମରେ। ଗୋଟିଏ ଛୋଟ ପାହାଡ ଉପରେ ଲିଙ୍ଗ ବିରାଜିତ। ପ୍ରାୟ ୧୦/୧୨ କିଲୋମିଟର ଚାଲିଲା ପରେ ଠାକୁରଙ୍କ ପାଖରେ ପହଞ୍ଚିଗଲୁ। ଘରେ ଯାହା ଖାଇକରି ଯାଇଥିଲୁ। ସେଠି ଦିନ ୨ଟା ବେଳକୁ ମୁଢ଼ି ନଡ଼ିଆ ଖାଇ ଫେରିଲୁ। ବର୍ଷା ଦିନର ବିଲରାସ୍ତା, ହିଡ଼ରେ ଯିବାକୁ ହୁଏ। ମୁଁ କେବଳ ପିଲାବେଳ ଆମ ଗାଁ ରୋଡ଼କୁ ଦେଖିଥିଲି। ସେଠି ଦେଖିଲି ଆଉ ଗୋଟିଏ ରୋଡ଼। ପ୍ରତାପ ପ୍ରସାଦରୁ ବାହାରି ଦର୍ପ ନାରାୟଣପୁରରେ ନୂଆ ଜଗନ୍ନାଥ ସଡ଼କକୁ ମିଶିଛି। ଦୁଆଷ୍ଟନଦୀ ପାର ହେଲୁ। ସେତେବେଳେ ସେଠି ପୋଲ ହୋଇ ନଥିଲା। ପୋଲ ହେଲା ୧୯୯୦ ମସିହାରେ। ଫେରିଲା ବେଳେ ଚାଲି ଚାଲି ଘରେ ପହଞ୍ଚିଲା ବେଳକୁ ରାତ୍ରି ୮ଟା। ଏତେ ଚାଲିବା ମୋର ଅଭ୍ୟାସ ନଥିଲା। ମୋତେ ଜ୍ୱର ଆସିଗଲା ଦିନକ ପାଇଁ।

## ସର୍ବଜଣା

ଏଇଟା ୧୯୫୧ ମସିହାର କଥା। ଆମ ଗାଁ ସାଉକାର ଘରଙ୍କ ବାଡିରୁ କି

ଖଳାରୁ କିଛି ଜିନିଷ ଚୋରି ହେବାରୁ ସେମାନେ ବ୍ୟସ୍ତ ହେଲେ। ଚୋର କିଏ ଜଣା ପଡିଲାନି। ଜଣେ କିଏ କହିଲେ ନୟାଗଡ଼ ପାଖ ଢ଼େଙ୍କଣାରେ ଜଣେ ବାବାଜୀ ଅଛନ୍ତି। ସେ ସର୍ବଜଣା। ନଖରେ ଅଞ୍ଜନ ମାରି ଚୋରକୁ ଦେଖାଇଦେବେ। ଜଣେ କମ୍ ବୟସର ପିଲା ଦରକାର ନଖ ଦେଖାଇବାକୁ। ସାଉକାର ଘର ଆମର ସଙ୍ଗାତବନ୍ଧୁ। ସେମାନେ ମୋତେ କହିଲେ ଢ଼େଙ୍କଣା ଯିବାକୁ। ମୋତେ ମୋ ଦାଦା ଲିଙ୍ଗରାଜ ଦୋରା ନେଇ ବାହାରିଲେ ଢ଼େଙ୍କଣା। ପୁଆଣିଆ, ପଦ୍ମାଦେଇପୁର, ଧବଳେଇ ଦେଇ ନୟାଗଡ଼ରେ ପହଞ୍ଚି ସେଠୁ ୩ କି.ମି ଦୂର ଢ଼େଙ୍କଣାରେ ପହଞ୍ଚିଲୁ। ବାବାଜୀ କହିଲେ ପିଲାଟା ବଡ଼ ହୋଇଗଲା। ଛୋଟ ହେବା ଦରକାର। ବଡ଼ପିଲାଙ୍କ ନଖରେ ଅଞ୍ଜନ ବୋଳିଲେ ଦିଶିବନି। ତଥାପି ମୋ ନଖରେ ଅଞ୍ଜନ ମାରିଲେ ଏବଂ ମୋତେ ପଚାରିଲେ "କିଛି ଦିଶୁଛିକି"। ମୁଁ ମନା କଲି। ନୟାଗଡ଼ ଟାଉନରୁ ଢ଼େଙ୍କଣା ଗଲେ ବାଟରେ ପଡ଼ିବ ଡାହୁକା ନଈ। ନଈରେ ବୁକେପାଣି। ଫେରିଲା ବେଳେ ସେଦିନ ନୟାଗଡ଼ରେ ରହିଲୁ। ବାଞ୍ଛା ହୋଟେଲରେ ଭାତ ଖାଇଲୁ। ଏବେ ଯେଉଁଠି ନୟାଗଡ଼ ପ୍ରଜାମଣ୍ଡଳ ମହିଳା କଲେଜ ଚାଲିଛି ସେଠି ଥିଲା ସେ ସମୟରେ ପ୍ରଜାମଣ୍ଡଳ ଅଫିସ। ସେହି ପ୍ରଶସ୍ତ ବାରଣ୍ଡାରେ ରାତ୍ରିଯାପନ କରି ଗାଁକୁ ଫେରିଲୁ। ସେ ଧବଳେଶ୍ୱର କଣ୍ଟାବଣିଆ ପୁଆଣିଆ ଜଙ୍ଗଲି ଅଞ୍ଚଳ ରାସ୍ତା ନେଇ।

## ଅସରନ୍ତି ରାସ୍ତା

ଏଇଟା ୧୯୪୯ ମସିହାର କଥା। ମୁଁ ପଢୁଥାଏ ତୃତୀୟ ଶ୍ରେଣୀରେ। ବାପା ସେ ସମୟର ଜଙ୍ଗଲ କୂପ ଠିକା ନେଇ ରହୁଥିଲେ ଗୋଡିପଡ଼ା ଆଡ଼ର ତୁଲବି ଜଙ୍ଗଲରେ। ମାଁ କହିବାରୁ ଗୋଟେ କାଠ ହିସାବ ( କ୍ୟୁବିକ୍ ମାପ) ବହି ନେଇଗଲି। ଚାଲିବା ଯେପରି ସରୁ ନାହିଁ। ଆମ ଗାଁରୁ ହିଡ଼ ରାସ୍ତାରେ ଗଲି ଗୋଡ଼ିପଡ଼ାକୁ। ସେଠୁ ଡମପଡ଼ା। ବାପାଙ୍କ ସଙ୍ଗାତ ଘର ଡମପଡ଼ାରେ। ସେଠି ପହଞ୍ଚି ବାହାରିଲି ତୁଲବି ପଚାରି ପଚାରି। ସତେ ଯେପରି ରାସ୍ତା ସରୁନାହିଁ। ସକାଳ ୭ଟା ବେଳେ ବାହାରି ପହଞ୍ଚିଲି ୨ଟା ବେଳକୁ। ଭାବୁଥିଲି ଏତେ ରାସ୍ତା କେମିତି ଚାଲିକି ଆସିଲି। ସେଠି ଦେଖିଲି ମୋରି ଶ୍ରେଣୀର ଛାତ୍ର କେଶରପୁରର ଗଉଁ ଚଣା ବିକିବାକୁ ଆସିଛି ଏଇ ତୁଲବି ଗାଁକୁ। ଭାବିଲି ମୋତେ ଚାଲିକି ଆସିବା ଏତେ କଷ୍ଟ ହେଉଛି; ଅଥଚ ମୋର ଶ୍ରେଣୀରେ ପାଠ ପଢୁଥିବା ଗଉଁ ଏତେ ବାଟ ଆସିଛି ଚଣା ବିକିବାକୁ ପରିବାର ପ୍ରତିପୋଷଣ ପାଇଁ। ମୋର କଷ୍ଟ

କମିଗଲା। ଏବେ ମୁଁ ଶୁଣିଲି ଗଉଁ (ଭଲ ନାମ ସଂସାରୀ ବେହେରା) କିଛି ଦିନ ତଳେ ମୃତ୍ୟୁ ମୁଖରେ ପଡ଼ିଛି।

## ସରି ଯାଉଛିରେ ଏହିଠାରୁ ମନୋରଥ

୧୯୯୭ ମସିହାର କଥା। ମୁଁ ପୁରୁଣା ବହି ଦୋକାନରୁ ପାଇଲି ଚିନ୍ତାମଣି ମିଶ୍ରଙ୍କ ଆତ୍ମଜୀବନୀ। ସେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ସେ ସମୟର କଥା। ତାଙ୍କ ପରିବାର କଥା। ସେ ଲେଖିଛନ୍ତି ତାଙ୍କ ନନା (ବାପା) ସବୁବେଳେ ଗୋଟେ ଗୀତ ଗାଉଥିଲେ "ସରି ଯାଉଛିରେ ଏହିଠାରୁ ମନୋରଥ"। ଗୀତଟି କିଏ ଲେଖିଛି ଏବଂ କେଉଁ ବହିରେ ଅଛି ସେକଥା ଜଣେ ପଣ୍ଡିତଙ୍କୁ ପଚାରି ବୁଝିଲେ। ଗୀତଟି କବିସୂର୍ଯ୍ୟ ବଳଦେବ ରଥଙ୍କ ଦ୍ୱାରା ରଚିତ। ଗୀତଟି ତାଙ୍କୁ ଏତେ ଭଲ ଲାଗିଲା ଯେ ମୂଳ ଗ୍ରନ୍ଥାବଳୀ ମଗାଇ ଗୀତଟିକୁ ଟିପିଲେ। ଏହା ପଢ଼ିବା ପରେ ମୋ ମନରେ ଉତ୍ସୁକତା ଜାତ ହେଲା। ସେତେବେଳକୁ ମୋର ଅବସର ନେବା ସମୟ ଆସି ଯାଉଥିଲା। ସ୍ୱତଃ ମୋ ମନକୁ ମନ ଏ ଗୀତ ମୋ ମନରେ ରହିଲା। 'ଏହିଠାରୁ ମନୋରଥ'। ପୁରା ଗୀତଟିକୁ ଗ୍ରନ୍ଥାବଳୀରୁ ମୋ ଡାଏରୀରେ ଉତ୍ତାରିଲି।

(କବିସୂର୍ଯ୍ୟ ଗ୍ରନ୍ଥାବଳୀ ପୃ- ୩୦୩)

(ରାଗ ପୂରବୀ)

ସରିଯାଛିରେ ଏହିଠାରୁ ମନୋରଥ
ଚାହିଁଦେଲେ ଆଉ କାହିଁ ନ ଦିଶଇ ଆଖି ଥାଉ ଥାଉ ପଥ (ପଦ)
ସୀତା ସୀତାକାନ୍ତ ଲକ୍ଷ୍ମଣ ସହିତେ ଆରୋହଣ କରି ରଥ,
କାନନ ଗମନ କରୁ ସୁମନ୍ତରେ ଖେଦେ କହେ ଦଶରଥ (୧)
ଶବର ଶରରେ ତ୍ରସ୍ତ ହେଲାବେଳେ କପଟରେ ଗୋପୀନାଥ
ଗାଣ୍ଡୀବ ବଢ଼ାଇ ଦେଇ ଶ୍ରୀଭୁଜକୁ ମନେ ବିଚାରର ପାର୍ଥ (୨)
ଅକ୍ରୁର ସହିତେ ମଧୁପୁର ଯିବେ ବୃନ୍ଦାବନ କଳାନାଥ
ଦେଖି ଅନ୍ୟୋନ୍ୟରେ କୁହାକୁହି ହୋଇ ସ୍ନେହେ ଗୋପଙ୍ଗନା ଯୁଥ (୩)
ସନ୍ୟାସ ବେଶ ଧାରଣ କରି ଗୋରା ତେଜିଣ ସକଳ ସ୍ୱାର୍ଥ
ନମାନନ୍ତେ ଶଚୀ କୁହା, ବିଷ୍ଣୁପ୍ରିୟା ଭାବେ କରେ ପଡି ମାଥ (୪)
ଦଶରଥ, ପାର୍ଥ ଗୋପୀ ବିଷ୍ଣୁପ୍ରିୟା ପ୍ରାଣଧାରଣ ସମର୍ଥ
ନୋହିବାରୁ ବୋଲେ ନୀଳାଦ୍ରି ବିହାରୀ ହରିଚନ୍ଦନ ଯଥାର୍ଥ (୫)

## Stepping up Pay (ଦରମା ସମୀକରଣ)

୧୯୯୭-୯୮ ମସିହାବେଳକୁ ଗେଡ଼େସନ ଲିଷ୍ଟରେ ମୋ ତଳେ ଥିବା ଇଂ ଯୁଧିଷ୍ଠିର ଶତପଥି ଗୋଟିଏ ଅଧିକା ଇନକ୍ରିମେଣ୍ଟ ପାଇଲେ Stepping up Pay ମାଧ୍ୟମରେ। ଏହାକୁ ଦେଖି ମୁଁ ଦରଖାସ୍ତ କଲି ନିର୍ମାଣ ବିଭାଗର ସଚୀବଙ୍କୁ। କାରଣ ଦର୍ଶାଇଲି ଯେ ଲିଷ୍ଟରେ ମୋ ତଳେଥିବା ଯୁଧିଷ୍ଠିର ଶତପଥି ମୋ ଠାରୁ ଅଧିକା ପାଇଲେ। ସେମାନଙ୍କର Pay fixation ଆଦେଶ ନିର୍ମାଣ ବିଭାଗରେ ହିଁ ହେଲା ନିର୍ମାଣ ବିଭାଗର F.A. ସହମତ ହେବାରୁ ଆଦେଶ ବାହାରିଲା।

ଯୁଧିଷ୍ଠିର ଶତପଥିଙ୍କ ଅର୍ଡର ବାହାରିଲା ବେଳକୁ ମୁଁ ଅବସର ନେଇ ସାରିଲିଣି। ମାତ୍ର fixation ସମୟ ଅବସର ପୂର୍ବର ଘଟଣା ଥିବାରୁ ମୁଁ ଦରଖାସ୍ତ କରିଥିଲି। ନିର୍ମାଣ ବିଭାଗର ତଳ ସ୍ତରକୁ ମୋ ସପକ୍ଷରେ ନୋଟ ଗଲା। ମାତ୍ର ମୋ ଦୁଃଭାଗ୍ୟକୁ F.A. ମହାଶୟ ଅର୍ଥ ବିଭାଗକୁ ମଞ୍ଜୁରି ପାଇଁ ପଠାଇଲେ। ମୁଁ ଅର୍ଥ ବିଭାଗରେ ପହଞ୍ଚି ମୋର ଫାଇଲକୁ ଅନୁଧ୍ୟାନ କରିବା ପାଇଁ ଅନୁରୋଧ କଲି। A.E.E. କ୍ୟାଡ଼ରରେ ଯୁଧିଷ୍ଠିର ଶତପଥି ମୋଠୁ ତଳେ ଅଛନ୍ତି। କ୍ୟାଡର P.S.C.ର ଅନୁମୋଦନ କ୍ରମେ ତିଆରି ହୋଇଛି। ଆମ୍ଭେମାନେ ମଧ୍ୟ ନିର୍ବାହୀ ଯନ୍ତ୍ରୀ ପଦକୁ ପ୍ରମୋସନ ପାଇଁ A.E.E. କ୍ୟାଡର ବଳରେ। ମାତ୍ର ଆମେ ପ୍ରମୋସନ ପାଇଥିବା ନିର୍ବାହୀ ଯନ୍ତ୍ରୀଙ୍କ କ୍ୟାଡର P.S.C. କୁ ପଠାଯାଇ ନାହିଁ। ଅର୍ଥବିଭାଗ କହିଲେ ନିର୍ବାହୀ ଯନ୍ତ୍ରୀ କ୍ୟାଡରରେ କିଏ ସିନିଅର ଗୋବର୍ଦ୍ଧନ ଦୋରା ନା ଯୁଧିଷ୍ଠିର ଶତପଥି। ମୁଁ ଦର୍ଶାଇଲି। (ଏଇଟା ୧୯୯୪ ମସିହାର କଥା) A.E.E. କ୍ୟାଡରର ମୁଁ ସିନିଅର। ଆଗ ପ୍ରମୋସନ ପାଇଛି। ଅର୍ଥ ବିଭାଗର ଡ଼େପୁଟୀ ସେକ୍ରେଟାରି ରାଜକିଶୋର ଚୌଧୁରୀକୁ ମୁଁ ବୁଝାଇଲି। ସେ ମୋ ସପକ୍ଷରେ ମତ ଦେଲେ ମଧ୍ୟ ଅର୍ଥ ବିଭାଗ ସେକ୍ରେଟାରି ଅଜିତ୍ ତ୍ରିପାଠୀ କହିଲେ, ନିର୍ବାହୀ ଯନ୍ତ୍ରୀଙ୍କ କ୍ୟାଡର ଲିଷ୍ଟ ଦରକାର। ଫାଇଲ ଫେରିଲା। ନିର୍ମାଣ ବିଭାଗ ଗୋଟିଏ ନିର୍ବାହୀ ଯନ୍ତ୍ରୀଙ୍କ Tentativeର କ୍ୟାଡର ଲିଷ୍ଟ ପ୍ରସ୍ତୁତ କରି ପୁଣି ଅର୍ଥ ବିଭାଗକୁ ପଠାଇଲେ। ମୁଁ ସେକ୍ରେଟାରିଙ୍କୁ କହିଲି ଏବେ ଅନେକ ବର୍ଷ ବିତିଗଲାଣି। ନିର୍ବାହୀ ଯନ୍ତ୍ରୀଙ୍କ କ୍ୟାଡରରୁ ୧୦ ଅଣା ଅବସର ନେଲେଣି। ନିର୍ମାଣ ବିଭାଗ ପଠାଇଥିବା Tentative gradation listକୁ ଆପଣ ଗ୍ରହଣ କଲେ ମୁଁ ଉପକୃତ ହେବି। ମୋ କଥାଶୁଣି ରାଜି ହୋଇ ତାଙ୍କର ଜଏଣ୍ଟ ସେକ୍ରେଟାରି ପ୍ରଫୁଲ କୁମାର ପଣ୍ଡା, IASଙ୍କୁ କରିଦେବା ପାଇଁ କହିଲେ। ମାତ୍ର ଏଇଠି ହୋଇଗଲା ମୋର ଗୋଟିଏ ସାଂଘାତିକ ଭୁଲ୍ । ଯାହା ସବୁଦିନ ପାଇଁ ମୁଁ ପାଇବାକୁ ଥିବା ପ୍ରାପ୍ୟ ହରାଇଲି। ମୁଁ ଜଏଣ୍ଟ ସେକ୍ରେଟାରିଙ୍କ ପାଖରେ ବସିଥିଲାବେଳେ ସେ ଡ଼କାଇ ପଠାଇଲେ ମୋ

ଫାଇଲ୍ କରୁଥିବା ସହକାରୀଙ୍କୁ। ତାଙ୍କୁ କରିକି ଫାଇଲ ଆଣିବା ପାଇଁ କହିଲେ। ଦୁଇଦିନ ପରେ ବୁଝିଲା ବେଳକୁ ବିଭାଗ ଏମିତି ମନ୍ତବ୍ୟ ଦେଇଛି ଯେ ପଣ୍ଡାବାବୁ କହିଲେ କିଛି କରି ହେବନି। ବିଭାଗରୁ ମନ୍ତବ୍ୟ ଆସିଥିଲା P.S.C. ଦ୍ୱାରା ସ୍ଥିରକୃତ Gradation list is final ଏହି କ୍ଷେତ୍ରରେ ନିର୍ବାହୀ ଯନ୍ତ୍ରୀଙ୍କର ଗ୍ରେଡ଼େସନ ଲିଷ୍ଟ ନାହିଁ। ତେଣୁ ଗୋବର୍ଦ୍ଧନ ଦୋରା ଯେ ଯୁଧିଷ୍ଠିର ଶତପଥିଙ୍କ ଠାରୁ ସିନିଅର କହିହେବନି। ଅର୍ଥବିଭାଗ ସେକ୍ରେଟାରୀ ମଧ୍ୟ ଏ ନୋଟ ପଢ଼ି କିଛି କରି ହେବନି ବୋଲି କହିଲେ। ମୁଁ ହତାଶ ହେଲି। ଯଦି ମୁଁ ସଂପୃକ୍ତ କିରାନିଙ୍କ ପାଖରେ ବସି ତାଙ୍କୁ ସେକ୍ରେଟାରି କହିବା କଥା କହିଥାନ୍ତି ଏବଂ ଜଏଣ୍ଟ ସେକ୍ରେଟାରି ତାଙ୍କୁ କହିଥାନ୍ତେ ତେବେ ଫାଇଲ ଆରାମରେ ଆସି ଅର୍ଡର ନେଇଥାନ୍ତା। ସହକାରୀ ଅନୁଭବ କଲେ ଯେ ମୁଁ ଜଏଣ୍ଟ ସେକ୍ରେଟାରିଙ୍କ ପାଖରେ ବସି ତାଙ୍କୁ ଡ଼କାଇଲି। ଏହି ସାଂଘାତିକ ଭୁଲ ପାଇଁ ବହୁତ କଷ୍ଟ ପାଇଲି।

ଏହାପରେ ମୁଁ ଭୁବନେଶ୍ୱର Tribunalରେ କେସ୍ କଲି। ୪ ବର୍ଷ ପରେ କୋର୍ଟ ସରକାରଙ୍କୁ କହିଲେ ଦୋରାଙ୍କୁ "ଦବ କି ନଦବ କୁହ"। ୩ ମାସ ଭିତରେ ନିର୍ମାଣ ବିଭାଗ ଉତ୍ତର ଦେଲାନି। ମୁଁ କଣ୍ଟେମ୍ପ୍ଟ କେସ୍ କରିବା କଥା। ମାତ୍ର ମୁଁ କଲି ନାହିଁ। କାରଣ ନିର୍ମାଣ ବିଭାଗ ମୋତେ ସବୁବେଳେ ସହଯୋଗ କରି ଆସିଛି। ଅର୍ଥ ବିଭାଗ ପାଇଁ ନିର୍ମାଣ ବିଭାଗର ସହକାରୀ ମାନେ କାହିଁକି ଦଣ୍ଡିତ ହେବେ ?

ମୋ ସାଙ୍ଗ ଇଂଞ୍ଜିନିୟର ତଥା ଆଡ଼ଭୋକେଟ୍ ନଗେନ ମହାନ୍ତି ଉପଦେଶ ଦେଲେ କଟକ ଟ୍ରିବୁନାଲରେ ନୂଆ କେସ୍ ପାଇଁ। କେସ୍ ଦିଆଗଲା। ନିର୍ମାଣ ବିଭାଗ ମୂଳକୁ ନ ଯାଇ କିମ୍ଭୂତ କିମାକାର ଉତ୍ତର ଦେଲେ। ଆମ ଆଡ଼ଭୋକେଟ କହିଲେ ଫାଇଲ୍ ମଗାନ୍ତୁ। ନିର୍ବାହୀ ଯନ୍ତ୍ରୀଙ୍କ ଗ୍ରେଡ଼େସନ ଲିଷ୍ଟ P.S.C.ଙ୍କୁ ପଠାଇ ଅପ୍ରୋଜ୍ କଲେ ମୋ Seniorty ସାବ୍ୟସ୍ତ ହୁଅନ୍ତା। ଫାଇଲ ଭିତରେ ପଶୁଛି କିଏ ? ଶେଷକୁ ଜଜ୍ ମେଣ୍ଟବାହାରିଲା Time barred case ଯଦିଓ ଯୁଧିଷ୍ଠିର ଅର୍ଡର ପାଇବାର ୧୫ ଦିନ ପରେ ମୁଁ ଦରଖାସ୍ତ କଲି।

ଓକିଲଙ୍କ ପରାମର୍ଶରେ ଅପିଲ୍ କଲି ଓଡ଼ିଶା ହାଇକୋର୍ଟରେ। ମୁଁ ବରମ୍ବାର ଫାଇଲ ମଗାଇ case study କଥା କହିବା ପରେ ମଧ୍ୟ ନିର୍ମାଣ ବିଭାଗ ମୁଁ ପାଇବା ପାଇଁ ଅଯୋଗ୍ୟ କହି ଲିଖିତ ମନ୍ତବ୍ୟ ଦେଲେ। ଆଠବର୍ଷ ପରେ ଜଜ୍ ମେଣ୍ଟ ମୋ ବିପକ୍ଷରେ ଗଲା। ମୋର କେସ୍ କଣ ଭୁଲ ଆଉ ବିଚାର କଣ ହେଲା ବୁଝିପାରିଲି। ଅନେକ ବର୍ଷର ପ୍ରଚେଷ୍ଟା ମୋର ବିଫଳ ହେଲା। ଏତିକି ବୁଝିଲି ନଖରେ ହେବା କାମ କଟୁରିରେ ହେବ ନାହିଁ। ସହକାରୀଙ୍କ ପାଖରେ ନ ବସି

ଜଏଣ୍ଟ ସେକ୍ରେଟାରିଙ୍କ ପାଖରେ ବସିବାର ଫଳ ଯେ ଏତେ ଗୁରୁତର ହେବ ମୋର କଳ୍ପନାତୀତ ହେଲା।

### ଛପରଫାଡ

ମୁଁ ନବେ ଦଶକରେ ନୟାଗଡ଼ରେ କାମ କରୁଥିବାବେଳେ ମୋ ଅଫିସରେ ଥିବା ଜଣେ ସହକାରୀ ଥିଲେ। ସେ ଅତ୍ୟନ୍ତ ଭଦ୍ର, ସଚ୍ଚୋଟ ଓ ନ୍ୟାୟବାଦୀ। ମୁଁ ତାକୁ ଅତ୍ୟନ୍ତ ଭଲ ପାଉଥିଲି। ୨୦/୭/୧୫ ତାରିଖରେ ମୁଁ ତାଙ୍କ ଠାରୁ ଏକ ଫୋନ କଲ୍ ପାଇଲି। ତାଙ୍କ ସ୍ତ୍ରୀଙ୍କର ଚିକିତ୍ସା ପାଇଁ ଟଙ୍କା ଦରକାର ମିନିମମ୍ ୫୦୦୦ ଟଙ୍କା ପଠାଇଲେ ସେ ଉପକୃତ ହେବେ। ମୋ ପାଖରେ ସେବେ ଟଙ୍କା ନଥିଲା। ମୋ ବ୍ୟାଙ୍କ୍ ଆକାଉଣ୍ଟରେ ମାତ୍ର ୮ ହଜାର ଥିଲା। ମାସଯାକ ଚଳିବାକୁ ପଡ଼ିବ। ବଡ଼ ଦ୍ୱନ୍ଦରେ ପଡ଼ିଲି। ଅନୁଭବ କଲି ମୋର ଦର୍କାର ଅପେକ୍ଷା ତାଙ୍କର ବେଶୀ ଦରକାର। ତେଣୁ ଅବିଳମ୍ବେ ପାଞ୍ଚ ହଜାର ଟଙ୍କା ପଠାଇଦେଲି। ପରଦିନ ୨୨/୭/୧୫ ବ୍ୟାଙ୍କକୁ ଗଲି ଦୁଇହଜାର ଟଙ୍କା ଉଠେଇବା ପାଇଁ। ଦେଖିଲି ମୋ ମୋବାଇଲକୁ ମେସେଜ୍ ଆସିଲା ୩୦ହଜାର ଟଙ୍କା କ୍ରେଡିଟ୍ ହୋଇଛି ବୋଲି। ଆଶ୍ଚର୍ଯ୍ୟ ହେଲି କେମିତି ହେଲା। ମୋର ଝିଅ ପ୍ରତିଭା ୩୦ ହଜାର ଟଙ୍କା ମୋ ଆକାଉଣ୍ଟରେ ଡିପୋଜିଟ୍ କରିଛି। ସେ ଆଗରୁ କେବେ କରିନଥିଲା। ମୁଁ ମଧ୍ୟ ତାକୁ କେବେ କହି ନାହିଁ। ଅନୁଭବ କଲି ଭଗବାନ ଏମିତି ଛପରଫାଡ଼ କରି ଦିଅନ୍ତି।

### ଗୋବିନ୍ଦ ଦ୍ୱାଦଶୀ ବୁଡ଼

୨୬/ ୨/୧୯୬୧ ରେ ପୁରୀରେ ଗୋବିନ୍ଦ ଦ୍ୱାଦଶୀ ବୁଡ଼ ପଡ଼ିବ ବୋଲି ଖବର ବାହାରିଲା। ଅନେକ ବର୍ଷ ପରେ ଏ ଶୁଭଦିନ ଆସୁଛି ବୋଲି ପ୍ରଚାର ଚାଲିଲା। ଏହି ସମୟରେ ମୁଁ କଟକରେ ଓଭରସିଓର ଟ୍ରେନିଂ ନେଉଥିଲି। କଟକ ମେଡ଼ିକାଲ କଲେଜ ବିଲିଡିଂ କାମରେ। ମୋ ପାଖରେ ମୋ କ୍ଲାସମେଣ୍ଟ ନାରାୟଣ ପ୍ରସାଦ ନାୟକ ରହୁଥିଲା। ସେ ଟ୍ରେନିଂ ନେଉଥିଲା କଟକ ଡିଭିଜନର ରୋଡ଼ର ସବଡିଭିଜନରେ। ସେହି ସମୟରେ ବାଦାମବାଡ଼ି ଲିଙ୍କ୍ ରୋଡ଼ ଆରମ୍ଭ ପାଇଁ ମାପ ଚୁପ ଚାଲିଥାଏ।

ନାରାୟଣ ଓ ମୁଁ ସ୍ଥିର କଲୁ ପୁରୀ ଯିବୁ। ମୋ ପାଖରେ ଥାଏ ମାତ୍ର ୨ଟଙ୍କା। ତା'ପାଖରେ ଥାଏ ୧୫ ଟଙ୍କାରୁ ଉର୍ଦ୍ଧ ବୋଧ ହୁଏ। ଟ୍ରେନରେ ଟିକେଟ କରି ପୁରୀରେ ପହଞ୍ଚିଲୁ। ବଡ଼ଦାଣ୍ଡର ସେହି ଗହଳିରେ ହାତ ଧରାଧରି ହୋଇ ଯିବା ଅବସ୍ଥାରେ ସେ ମୋଠୁ ଅଲଗା ହୋଇଗଲା। ଗହଳିରେ ମୁଁ ତାକୁ ପାଇଲିନି। ମନ୍ଦିର ପାଖ ସହାୟତା

କେନ୍ଦ୍ରରେ କହିଲି ମୋର ବନ୍ଧୁ ନାରାୟଣ ନାୟକଙ୍କୁ ଡାକବାଜି ଯନ୍ତ୍ର ସାହାଯ୍ୟରେ ଡାକନ୍ତୁ। ମୁଁ ତଳେ ଏବଂ ସେହି ସହାୟକ ଉପରେ।  ମୋ କଥା ତାଙ୍କୁ ଶୁଭିଲାନି। ହତାଶ ହେଲି। ମୋ ପାଖରେ ମାତ୍ର ୨ଟଙ୍କା ଅଛି। କଣ କରିବି ? ସେହି ଗହଳି ଭିତରେ ଚାଲି ଚାଲି ଷ୍ଟେସନରେ ପହଞ୍ଚିଲି। ଟ୍ରେନ୍ ଛାଡୁଥିଲା, ଟିକଟ ନ କରି ପଶିଲି। ସେଦିନ ଟି.ଟି.ଆଇ ମାନେ ବିନା ଟିକଟ ବାଲାଙ୍କୁ ଧରିବାକୁ ଭାରି ତତ୍ ପର।ମୋତେ ଧରିଲେ ଭୁବନେଶ୍ୱର ପୂର୍ବରୁ। ମୋଠୁ ଦୁଇଟଙ୍କା ନେଇ ଭୁବନେଶ୍ୱର ଷ୍ଟେସନରେ ଓହ୍ଲାଇ ଦେଲେ। ୩ଟା ବାଜିଲାଣି। ଖାଡ଼ା ଉପାସ। ପାଖରେ ୟୁନିଟ୍ ଦୁଇରେ ଆମ ଶରଣକୁଳ ଗୋଦାବରୀଶ ବାବୁଙ୍କ ସରକାରୀ ଘର। ସେଠି ଆମ ଆଡ଼ର ପିଲାଏ ମେସ୍ କରିଥାନ୍ତି। ସେଠି ପହଞ୍ଚି ମୋ ଦୁଃଖ କହନ୍ତେ ସେଠି କଣ ଖାଇ କିଛି ପଇସା ଟିକଟ କରିବା ପାଇଁ ଆଣି କଟକରେ ପହଞ୍ଚିଲି। ନାରାୟଣ ସେଦିନ ରାତିରେ କି ପରଦିନ ପହଞ୍ଚିଲା ମନେ ନାହିଁ। ଗୋଟିଏ ଅନୁଭୂତି।

## ଚାରବାଟିଆରେ ଚୋରି

ମୋର କାର୍ଯ୍ୟକାଳ ଚାରବାଟିଆ ସବ୍ ଡିଭିଜନ ଅଫିସରେ ୧୯୮୪ ରୁ ୧୯୮୭ ପର୍ଯ୍ୟନ୍ତ। ଏହି ସବଡିଭିଜନ ଅଧିନରେ ଡିଭିଜନର ସେଣ୍ଟ୍ରାଲ୍ ଷ୍ଟୋର ହୋଇଅଛି। ବିଗତ ଦୁଇବର୍ଷ ଭିତରେ ଷ୍ଟୋର ପାଇଁ ଅନିୟମିତ ଭାବରେ ବହୁତ କୋଠା ନିର୍ମାଣ ସମାଗ୍ରୀ କିଣାଯାଇଥିଲା। ସେଥିପାଇଁ ମୁଁ ଯୋଗ ଦେବାବେଳକୁ ଓଡ଼ିଶା ସରକାରଙ୍କ ଷ୍ଟୋର ଭେରିଫିକେସନ୍ ପାର୍ଟିର ଗୋଟିଏ ସ୍ପେସାଲ୍ ଅଡିଟ୍ ଚାଲିଥିଲା। ନିର୍ବାହୀ ଯନ୍ତ୍ରୀ ଓ  ସହକାରୀ ଯନ୍ତ୍ରୀଙ୍କ ସରଳତାର ସୁଯୋଗ ନେଇ ଅନାବଶ୍ୟକ ଭାବେ ଜିନିଷ କିଣା ଯାଇଥିଲା। ଏ ବିଷୟ ସରକାରୀ ନଥି ପତ୍ରରେ ଅଛି। ଏ ବିଷୟରେ ଆଉ କିଛି ନ କହି ମୁଁ ଲେଖୁଛି ଷ୍ଟୋରରୁ ଚୋରି ହେବା ଉପରେ।

ଦିନେ ଷ୍ଟୋର ଜେ.ଇ ଦେଖିଲେ ଯେ ଗୋଟିଏ ବଖରାରୁ ଅନେକ ଗୁଡ଼ିଏ ପିତଳ ଟାୱାରବୋଲ୍ ଟଚୋରି ହୋଇଛି। କବାଟ ଭଙ୍ଗା ଯାଇନି, ତାହା ଅତୁଟ ଅଥଚ ଚୋରି। ଦରୱାନ୍ ଗେଟ୍ ଜଗିଛନ୍ତି। ପୁଲିସକୁ ଦେଲେ ଲାଭ ହେବନି ଭାବି ଷ୍ଟୋର ଜେ.ଇ ନିଜ ହାତରୁ ଭରଣା କଲେ। ମୁଁ ଚାରିବାଟିଆ ଛାଡ଼ିଲା ପରେ ଥରେ ଦେଖା ହେଲା ମୋର ଜଣେ ପୁରୁଣା ଚିହ୍ନା ସହକାରୀଙ୍କୁ ଯେ କି ଆମ ସବ୍ ଡିଭିଜନ୍ ରେଥିଲେ। କଥା ପ୍ରସଙ୍ଗରେ ସେ ଚୋରିର କଦର ବଖାଣିଲେ। ଯେଉଁଦିନ ଚୋରି କରିବାକୁ ଥିବ ୱାର୍କମ୍ୟାନ୍ ସେହି ରୁମ୍ ରଚାବିଟି ପାଖରେ ରଖି ସଂଧ୍ୟାବେଳକୁ ଚାବି ପେଛାକୁ ବାବୁଙ୍କୁ ଦେବ। ରାତ୍ରରେ ଚୋରି କରି ସାରି ସକାଳେ ବାବୁଙ୍କ ଠାରୁ ଚାବି ପେଛାରେ

ଏହି ଚାବିଟି ରଖିଦେବ। ପେଷ୍ଟାରେ ୩୦/୪୦ଟି ଚାବିଥିବାରୁ ଗୋଟିଏ କାଢ଼ିଲେ ଜଣା ପଡ଼େନି। ଏହିପରି ଭାବରେ ଷ୍ଟୋର ଜଗୁଥିବା ଗେଟ୍ କିପର୍ ମାନେ ଚୋରି କରନ୍ତି। ଅବଶ୍ୟ ମୁଁ ଚାରିବାଟିଆ ଛାଡ଼ିଲା ପରେ ଏ ସବୁ ଜଣା ପଡ଼ିଲା। କିଛି ଲୋକଙ୍କର ଚାକିରି ଗଲା ଇତ୍ୟାଦି। ମାତ୍ର ମୋର ମନଦୁଃଖ, ଏକଥା ମୁଁ କିପରି ଅନୁମାନ କରିପାରିଲିନି ? ଚାରିବାଟିଆ ନିର୍ବାହୀ ଯନ୍ତ୍ରୀ ସ୍ୱର୍ଗତ ନିରଞ୍ଜନ ପାଣିଗ୍ରାହୀ ସବୁବେଳେ କହନ୍ତି ସବୁ କାମ ପାଇଁ ବୁଦ୍ଧି ଦରକାର। ବୁଦ୍ଧି ନଥିଲେ କିଛି ସଫଳ ହେବନି।

## ଋଣ ପରିଶୋଧ

ଆମ ପିଲାବେଳର କଥା। ମୁଁ ୪ର୍ଥ ଶ୍ରେଣୀରେ ପଢୁଥାଏ। ସବୁ ବହି କିଣିବା ସମ୍ଭବ ନୁହେଁ। ଉପର କ୍ଲାସବାଲାଙ୍କୁ ଚିହ୍ନା ପରିଚୟରେ ମାଗନ୍ତି। କେଶରପୁରର ମଦନ ହଜାରୀ ୪ର୍ଥରୁ ପାଶ୍ କରି ୫ମକୁ ଆସି ଲେ। ସେ ଗୋଡିପଡା ଏମ୍.ଇ. ସ୍କୁଲ୍ ରେ ପଢୁଥିଲେ। ସେ ଆମର ସମ୍ପର୍କରେ ମଉସାପୁଅ ଭାଇ ହେବେ। ମୁଁ ଗଲି କେଶରପୁର ବହି ମାଗିବାକୁ। ମଦନ ୨ଟି ବହି ଦେଲେ। ଅନ୍ୟ ରୁମ୍ ରୁ ତାଙ୍କର ପିତା ଲିଙ୍ଗରାଜ ହଜାରୀ କହିଲେ, 'ମଦନ ତୋର ସାନଭାଇ ସୁବାଷର ବହି ଦରକାର ଜାଣିଛୁ ତ' ? ମଦନ କହିଲେ 'ହଁ ହଁ ମୁଁ ଜାଣିଛି। ମୋତ କେମିତି କେମିତି ଲାଗିଲା। ଏହି ସମୟରେ ମଦନଙ୍କ ମା' କହିଲେ 'ଗୋବର୍ଦ୍ଧନ ଖାଇବୁ କିରେ', ମୁଁ ମନା କଲି। ମୁଁ ସେହି ୨ଟି ବହି ଧରି ଗାଁକୁ ଆସିଲି। ଏଇଟା ୧୯୪୯ ମସିହାର କଥା। ମୁଁ ଏହାର ୪୩ ବର୍ଷ ପରେ ୧୯୯୨ ମସିହାରେ ନୟାଗଡର ପି.ଡବ୍ଲୁ.ଡି ଏସ୍.ଡି.ଓ ଥିଲି। ଏହି ସମୟରେ ଲିଙ୍ଗରାଜ ହଜାରୀ ଗାଁରେ ରହି ପେନସନ ନେଉଥିଲେ। ସେ ପୋଲିସ ଇନସ୍ ପେକ୍ଟରପଦରେ କାମ କରି ଅବସର ନେଇଥିଲେ। ପ୍ରତି ବର୍ଷର ନଭେମ୍ବର ମାସର ଏକଦିନ ଆସି ଟ୍ରେ ଜେରିଅଫିସରଙ୍କ ଆଗରେ ଉପସ୍ଥିତ ହୋଇ ନିଜର ବଞ୍ଚିବା ପ୍ରମାଣପତ୍ର ନେବା କଥା। ସେତେବେଳକୁ ଶ୍ରୀ ହଜାରୀ ଆସିବା ଅବସ୍ଥାରେ ନଥିଲେ। ତେଣୁ ମଦନ ମୋର ସାହାଯ୍ୟ ମାଗିଲେ। ମୁଁ ନୟାଗଡ ଟ୍ରେ ଜେରି ଅଫିସରଙ୍କୁ ଅନୁରୋଧ କରିଥିଲି ମୋ ସାଙ୍ଗରେ କେଶରପୁର ଯିବାକୁ। ସେ ମୋ ପ୍ରସ୍ତାବରେ ରାଜି ହୋଇ କେଶରପୁର ଆସି ଜୀବନ ପ୍ରମାଣପତ୍ର ଦେଇଥିଲେ।

## ଅସୁସ୍ଥତା

ଅସୁସ୍ଥତା  କାହିଁ ତୋର ରୂପ ଭୀଷଣ  
ଯେ ରୂପେ କଷ୍ଟୁ ତୁହି ଜନଜୀବନ।

ମୋର ଏହି ତେୟାଅଶି ବର୍ଷ ଜୀବନ ଭିତରେ ଅନେକ ରୋଗ, ବୈରାଗ

ଭୋଗିଛି। ଆଖି କାଟ୍ରାକ ଅପରେସନ ଦୁଇ ଆଖି ଯାକ କରେଇଛି। ଦୁଇପଟ ଯାକ ହାର୍ଣ୍ଣିଆ ଅପରେସନ ମଧ୍ୟ କରାଇଛି। ଗ୍ରାଷ୍ଟ୍ରାଇସ୍ ବେମାରରେ ଦୀର୍ଘ ୩ବର୍ଷ କଷ୍ଟ ପାଇଛି। ମାନସିକ ଚିନ୍ତା ରହିଲେ ପେଟରେ ଅମ୍ଳ ଝରି ଗ୍ରାଷ୍ଟ୍ରାଇସ୍ ବେମାର ହୁଏ। ଏକଥା ମୁଁ ଜାଣିନପାରି ଅନେକ ବଡ ବଡ ଡାକ୍ତରଙ୍କ ପାଖରୁ ଆଣ୍ଟାସିଡ ଔଷଧ ମାନ ଖାଇଲି। ମାତ୍ର ଭଲ ହେଲି ଯେଉଁ କାରଣରୁ ଚିନ୍ତା ଥାଏ, ତାହା ଯେତେବେଳେ  ଚାଲିଗଲା। ଏକଥା ମୁଁ ଜାଣିଲି ପ୍ରଫେସର ଡାକ୍ତର ସତ୍ୟବାଦୀ ହଜାରୀଙ୍କ ଠାରୁ ଅନେକ ବର୍ଷ ପରେ। ସେ କହୁଥିଲେ ତାଙ୍କ ଜମି ବାଣ୍ଟ ଉପରେ ତାଙ୍କ ଭାଗ ପାଉନଥିବାରୁ ଏହି ଚିନ୍ତା ବ୍ୟାଧି ହେଲା। ଦେହ ଶୀର୍ଣ୍ଣ ହେଲା। ଝଡିଗଲେ। ସାର୍ଟ ପ୍ୟାଣ୍ଟ ହୁଗୁଳା ହେଲା। ମାତ୍ର ତାଙ୍କ ବନ୍ଧୁଙ୍କ ପରାମର୍ଶରେ ଜମି ଚିନ୍ତା ଛାଡ଼ିଲେ ଫଳରେ ବେମାର ଭଲ ହେଲା। ମୋ କେଶରେ ଏ.ଏମ.ଆଇ.ଇ ପରୀକ୍ଷାରେ ଯେଉଁ ଗଡବଡ ହୋଇଥିଲା, ଫଳରେ ମୋ ପାସ କରିବାଟା ୨ ବର୍ଷ  ଗଡିଗଲା। ମୋ ସାଙ୍ଗସାଥି ଆଗ ପାସ କରି ସନିୟର ହେଲେ। ଆଗ ପାସ କଲାବାଲା ଜେ.ଇ.ଏସ୍.ଡି.ଓ ହେଲେ। ଡେରିରେ ହେଲେ ମଧ୍ୟ ମୁଁ ଜେ.ଇ.ଏସ୍. ଡି.ଓ ହେବା ବେଳକୁ ବଡ ବାଧା ଆସିଲା। ମୋ ଉପରେ ଥିବା ଜେ.ଇ ନାରାୟଣ ଦାଶଙ୍କୁ ଚିଫଇଞ୍ଜିନିଅର ଏ.ବି. ମହାନ୍ତି କୌଣସି କାରଣରୁ ରାଗି ତାଙ୍କୁ ଏସ୍. ଡି.ଓ କଲେନି। ତେଣୁ ମୋ ଏସ୍.ଡି.ଓ ହେବା ବନ୍ଦ ହେଲା। ସେ ଯାହା ହେଉ ୧୯୬୯ ଜାନୁଆରୀରେ ଏ.ଏମ୍.ଆଇ.ଇ. ପାସ ପରେ ଚିନ୍ତା କମିଲା ଏବଂ ସ୍ୱାସ୍ଥ୍ୟ ଫେରିପାଇଲି। ମୋର ଚିନ୍ତା ଯୋଗୁଁ ହିଁ ମୁଁ ଏହି ଗ୍ରାଷ୍ଟ୍ରାଇସ୍ ରୋଗର ଶିକାର ହେଲି ତାହା ପ୍ରଫେସର ହଜାରୀଙ୍କ ଠାରୁ ଶୁଣି ଜାଣିଲି। ମୁଁ ଘୁମୁସର ଉଦୟଗିରି ଯାଇ ଡ. ଥୋମାସଙ୍କ ଉପଦେଶ କ୍ରମେ ସବୁ ଔଷଧ ପରିତ୍ୟାଗ କଲି,  ଯୋଗକୁ ଏ.ଏମ୍. ଆଇ.ଇ ପାସ ହୋଇ ସାରିଥିଲି। ଏହା ମୋର ଦୀର୍ଘ ୩ ବର୍ଷର ଯନ୍ତ୍ରଣା ୧୯୬୬ରୁ ୧୯୬୮ ଶେଷ ପର୍ଯ୍ୟନ୍ତ। ଆମର ଗୋଟିଏ କଥା ଅଛି 'ଚିନ୍ତା ଖାଏ ଗଣ୍ଡି'।

୨୦୦୮ ମସିହାରେ ମୁଁ ହାଣ୍ଡିଆ ଅପରେସନ ହୋଇଥିଲି। ଏହାର ପ୍ରାୟ ୧୫ ଦିନ ପରେ ମୋ ଦେହରେ ଜର ଆସିଲା। ଦି' ଦିନ ପରେ ଜ୍ୱର କମିଲା ପୁଣି ୨ ଦିନ ପରେ ଜ୍ୱର ଆସିଲା। ମୁଁ ଭାବିଲି ବୋଧହୁଏ ଅପରେସନ ଭୁଲ୍ ଯୋଗୁଁ ଏହି ଜ୍ୱର ଆସୁଛି ବୋଲି। ମାତ୍ର ସର୍ଜନ କହିଲେ ସର୍ଜେରି ଠିକ୍ ଅଛି ଅନ୍ୟ କାରଣରୁ ଜ୍ୱର ଆସୁଛି। ମୁଁ ସବୁପ୍ରକାର ପରୀକ୍ଷା କରାଇଲି। ମାତ୍ର ନିରର୍ଥକ। ଦୀର୍ଘ ୨ ବର୍ଷ ଏପରି କଷ୍ଟ ପାଇଲି। ଦିନେ ହଠାତ୍ ଦେଖାହେଲେ ମୋ ଘର ପାଖର ଚିହ୍ନା ଡାକ୍ତର ଦ୍ୱାରିକାନାଥ ଶତପଥି। ସେ କହିଲେ, ଏହା ଫାଇଲେରିଆ ଲକ୍ଷଣ। ମୋତେ

ଫାଇଲେରିଆ ଔଷଧ ଦେଲେ। ମ୍ୟାଜିକ ପରି ଜ୍ୱର ବନ୍ଦ ହେଲା। ମାତ୍ର ୧୫ ଦିନ ପରେ ଆସିଲା। ଛଅ ନମ୍ବର ବଡ ହସ୍ପିଟାଲକୁ ସୋମବାର ଓ ଗୁରୁବାର ଦିନ ଫାଇଲେରିଆର ଆଉଟଡୋର ଥାଏ ସେଠୁ ଉପଦେଶ ନେଇ ଔଷଧ ଖାଇଲି। ରୀତିମତ ଖାଇବାର ୮ ମାସ ପରେ ଏ ରୋଗରୁ ମୁକ୍ତ ହେଲି। ଦୀର୍ଘ ଦୁଇବର୍ଷ କଷ୍ଟ ପାଇଲି ଫାଇଲେରିଆ ଯୋଗୁଁ। କେହି ବଡ ବଡ ଡାକ୍ତର ନିଦାନ କରିପାରିଲେନି।

ଆଉ ଗୋଟିଏ ଶରୀର କଷ୍ଟ। ମୋର ଦିନକୁ ଅନେକ ଥର ଝାଡା ହେବାରୁ ଔଷଧ ଖାଇବାରେ ବନ୍ଦ ହେଲା। ମାତ୍ର ଖୋଲା ଝାଡା ହେଲାନି। ଖାଲି ପାଣି ମିଶା ଝାଡା ଦିନକୁ ୩/୪ ଥର ହେଲା। ଡାକ୍ତର ବଦଳାଇ ଔଷଧ ଖାଇବାରେ ଆରାମ ଲାଗିଲେ ମଧ୍ୟ ଝାଡା ଗଣ୍ଡଗୋଳ ଲାଗି ରହିଲା। ସାଧାରଣତଃ ଯେମିତିକା ଝାଡା ହେବା କଥା ନହୋଇ ସେହି କମ୍ କମ୍ ପାଣିଆ ଝାଡା ହେଲା। ବହୁତ ଗ୍ୟାସ ମଧ୍ୟ ବାହାରିଲା। ମୋର ସାଙ୍ଗ ଇଂ. ଚକ୍ରଧର ପୃଷ୍ଟିଙ୍କ କଥାନୁସାରେ 'ଲିଭାଗଡ୍' ଖାଇଲି ଏହା ଗୋଟିଏ ଆୟୁର୍ବେଦିକ ଚୂର୍ଣ୍ଣ। ରାତ୍ରରେ ଖାଇବା ପରେ ଦୁଇ ଚାମୁଚ୍ ଖାଏ। ସକାଳେଅନେକ ଥର ଝାଡା ହୁଏ ମାତ୍ର ଯେମିତିକି ମୋଟା ହୋଇ ବାହାରିବା ତାହା ହେଲାନି। ଏପରି ୬ ମାସ କଷ୍ଟ ପାଇଲା ପରେ ଦିନେ ହଠାତ୍ ପାଇଖାନାରେ ବସିଛି ଝାଡା ବାହାରୁନି। ଗୋଟିଏ କଠିନ ବସ୍ତୁ ବାଟ ଓଗାଳିଛି। ଆଙ୍ଗୁଠି ପୂରାଇ ବଡ କଷ୍ଟରେ କାଢ଼ିଲି। ଦେଖିଲି ଛଅ ଇଞ୍ଚ ଲମ୍ବର ଏବଂ ଏକ ଇଞ୍ଚ ମୋଟର ଟାଣ ଝାଡା। ବଡ ଆଶ୍ୱସ୍ତି ଲାଗିଲା। ଏହାପରଠୁ ଝାଡା ନିୟମିତ ଭାବରେ ହେଲା। ଆମ ହାସ୍ୟ କ୍ଲବର ଡାକ୍ତର ଶରତଚନ୍ଦ୍ର ପଣ୍ଡାଙ୍କୁ ପଚାରିବାରେ ସେ କହିଲେ ବେଳେ ବେଳେ ବୃହତ ଅନ୍ତ୍ରରେ ଝାଡା ରହିଯାଇ ବାଟ ବନ୍ଦ କରେ। ଯଦି ଝଡା ତଳକୁ ନଆସେ ତାକୁ ଅପରେସନ କରି କାଢ଼ିବାକୁ ପଡେ। ଏହାକୁ ଡାକ୍ତରୀ ଭାଷାରେ ସ୍କାଭେଲା କହନ୍ତି। ମୋ କେଶରେ ଏହା ମନକୁ ମନ ଆସ୍ତେ ଆସ୍ତେ ତଳକୁ ଯାଇ ମଳଦ୍ୱାରରେ ଲାଗିଲା ଯାହାକୁ ମୁଁ ଆଙ୍ଗୁଠି ପୂରାଇ ଝିଙ୍କି କାଢ଼ିଲି। ଏହା ୨୦୧୫ ମସିହାର କଥା। ପ୍ରାୟ ୬ ବର୍ଷ ପରେ ବହୁତ ବାୟୁ ହେଉଥିବାରୁ ମୁଁ କଲେନସ୍କୋପି କରାଇଲି ସମ ହାସପାତାଳରେ। ଜଣାପଡିଲା ବୃହତଅନ୍ତ୍ରରେ ଏକ କ୍ଷତ ହୋଇଛି। ପରୀକ୍ଷାରୁ ଜଣାପଡିଲା ଏହା କ୍ୟାନସର ନୁହେଁ। ଡାକ୍ତର କହିଲେ ସ୍କାଭେଲା ତଳକୁ ଆସିବା ବେଳେ ଯେତେଦୂର ସମ୍ଭବ ଘର୍ଷଣ ଯୋଗୁଁ ଏହି କ୍ଷତ ହୋଇଛି। ଏହା ମନକୁ ମନ ଭଲ ହେବ।

## ଆଣ୍ଠୁ ଯନ୍ତ୍ରଣା

୨୦୦୬ ମସିହାରେ ମୁଁ ଥରେ ସକାଳେ ହାସ୍ୟ କ୍ଲବକୁ ଯିବା ବାଟରେ ହଠାତ୍

ବାମ ଗୋଡରେ ଆଣ୍ଠୁ ଯନ୍ତ୍ରଣା ହେଲା। ମୁଁ ବସିପଡିଲି। ଏହା ପରଠୁ ଆରମ୍ଭ ହେଲା ଆଣ୍ଠୁ ଯନ୍ତ୍ରଣାର ଚିକିତ୍ସା। ଡାକ୍ତର ଦେଖାଇଲି, ଫିଜିଓଥେରାପି କଲି। ମାତ୍ର ଉପଶମ ନାହିଁ। ବୁଦ୍ଧିହୀନ ଯୋଗୁଁ ଟି.ଭି. ରେ ଗୋଟିଏ ବିଜ୍ଞାପନ ଦେଖି ଔଷଧ ମଗାଇ ଲେପଦେଲି। ଅଯଥା ବହୁତ ପଇସା ଖର୍ଚ୍ଚ ହେଲା ମାତ୍ର ଉପଶମ ନାହିଁ। ହଠାତ୍ ମୁଁ ମୋ ମୋବାଇଲ ଦେଖିଲି ଆଣ୍ଠୁ ପେନ୍ ପାଇଁ ଏକ୍ସରସାଇଜ। ଏହି ଏକ୍ସରସାଇଜକୁ ନିଜେ କରି ଦେଖାଇଛନ୍ତି ଡ. ମାଟୋ। ଏହି ଏକ୍ସରସାଇଜରେ ଗୋଡକୁ ୩ ଫୁଟରୁ ସାଢେ ୩ ଫୁଟ ପର୍ଯ୍ୟନ୍ତ ଗୋଟିଏ ଗୋଡ ଟେବୁଲ ଉପରେ ରଖିବ ୨ ମିନିଟ ଏବଂ ପରେ ଅନ୍ୟ ଗୋଡଟି ରଖିବ। ଏହିପରି ୧୫ ମିନିଟ୍ ପ୍ରତ୍ୟହ କଲେ ଆଣ୍ଠୁ ଯନ୍ତ୍ରଣା ଆଉ ରହିବନି। ଏହାକୁ ଦୈବଜନିତ ନିର୍ଦ୍ଦେଶ ଭାବି ମୁଁ ପ୍ରତ୍ୟହ କଲି ସକାଳେ। ଏଥିପାଇଁ ଗୋଟିଏ କାଠ ଫ୍ରେମ କଲି। ଏହି ଫ୍ରେମଟିକୁ ଗୋଟିଏ ବାଡ ପାଖରେ ରଖି ଗୋଡ ଟେକିବାକୁ ପଡେ। ହାତରେ କାନ୍ଥରେ ହାତ ଦେବ ନ ଚେତଗ୍ରିଲ ଥିଲେ ଧରିବ। ପଡିବାର ଭୟ ରହିବନି। ୭ ବର୍ଷ ହେଲା ଏହି ଅଭ୍ୟାସ ଜାରି ରଖିଛି। ଫଳରେ ଆଣ୍ଠୁ ଯନ୍ତ୍ରଣା ଆଉ ନାହିଁ ମୁଁ ଚାଲିବୁଲି ପାରୁଛି।

## ଦୁର୍ଘଟଣା

୧୯୭୪-୭୫ ମସିହାରେ ମୁଁ କଟକରୁ ଫେରୁଥିଲି ରାଜଦୂତ ମଟରସାଇକେଲରେ। ମୁଁ ଅନ୍ୟମନସ୍କ ହୋଇ ଆସିଲା ବେଳେ ଦେଖିଲି ମାତ୍ର ୧୫ ଫୁଟ ଦୂରରେ ଏକ କାର ଠିଆ ହୋଇଛି। ମୁଁ ଡାହାଣ ଆଡକୁ କାଟିଲା ବେଳେ ମୋର ଲେଗଗାର୍ଡ ଗାଡିର ପଛର ଦେହରେ ମାଡ ହୋଇ ପୂରା ଚେପା ହୋଇଯାଇଛି। ହେ ଭଗବାନ। ଲେଗଗାର୍ଡ ନଥିଲେ ମୋର ବାଁଗୋଡଟା କୁଆଡେ ଉଡିଯାଇଥାନ୍ତା। ଦୁର୍ଘଟଣା ଜନିତ କ୍ଷତ ବେଶି ବଡନଥିଲା।

୪ ବର୍ଷ ତଳେ ମୁଁ ସ୍କୁଟିରେ ହାସ୍ୟ କ୍ଲବରୁ ଫେରୁଥିଲା ବେଳେ ଜଣେ ସ୍କୁଟରବାଲା ମୋ ସ୍କୁଟରକୁ ମାଡଦେଲା। ଫଳରେ ଡାହାଣ ହାତ ତଳକୁ କରି ପଡିଗଲି। ଡାହାଣ ହାତର କାନ୍ଧ ଏମ୍ ଆର୍‌ଆଇକରି ଜାଣିଲି ଯେ ତନ୍ତୁମାନ ଛିଣ୍ଡି ଯାଇଛି। ଅପରେସନ ଦରକାର। ଅପରେସନ କଲି କେୟାର ହସ୍ପିଟାଲ୍ ରେ। ମାତ୍ର ଫଳ କିଛି ହେଲାନି। ଡାକ୍ତରଖାନା ୧ ଲକ୍ଷ ୩୦ ହଜାର ଟଙ୍କା ନେଲା। ଏହି ଟଙ୍କାର ୯୦ ଭାଗ ମୋର ଝିଅ ପ୍ରତିଭା ଇନ୍ସୁରାନ୍ସ କରିଥିବାରୁ ମିଳିଲା।

# ଆବିଷ୍କାର

**୧. ଘନଶ୍ୟାମ ମହାନ୍ତି:**



ଅଲେଖ ପ୍ରସାଦ ଦାସ
ସ୍ୱାଧୀନତା ସଂଗ୍ରାମୀ

ଓଡ଼ିଶା ସମ୍ବନ୍ଧରେ ବିଭିନ୍ନ ଇତିହାସ ଏବଂ ଲୋକଙ୍କୁ ଜାଣିବା ମୋର ଏକ ହବି। ଆମ ଗାଁ ପାଖ କେଶପାନିଆର କମ୍ୟୁନିଷ୍ଟ ଲିଡର ବାସୁଦେବ ଦୋରା କହୁଥିଲେ ଦଶହରା ଭେଟି ବହି ବିଷୟରେ। ବହିଟି ଛପା ହୋଇଛି ୧୯୪୮ରେ। ବହିଟି ଆମ ଗାଁ ଲାଇବ୍ରେରୀରୁ ପାଇଲି। ତାକୁ ଜେରକ୍ସ କରି ତାଙ୍କୁ ଦେଲି। ବହିର ଲେଖକ ଘନଶ୍ୟାମ ମହାନ୍ତି। ସେ ଜଣେ ସ୍ୱାଧୀନତା ଆନ୍ଦୋଳନର କର୍ମୀ ଏବଂ ଏହି ବହି ଛପାଇବାରୁ କୋର୍ଟ କେଶର ସମ୍ମୁଖୀନ ହୋଇଥିଲେ। ମୁଁ ଉତ୍କଳ ଦୀପିକା ଖବରକାଗଜ ୧୯୨୮ରୁ ପଢି ଜାଣିଲି ଜଣେ ସ୍ୱାଧୀନତା ସଂଗ୍ରାମୀ ଅଲେଖ ପ୍ରସାଦ ଦାସ ବିନା ଯୌତୁକ, ବିନା ବେଦୀରେ ମାତ୍ର ଗୋଟିଏ ପ୍ରତିଜ୍ଞାପତ୍ର ସ୍ୱାକ୍ଷର କରି ବିବାହ କରିଥିଲେ ଘନଶ୍ୟାମ ମହାନ୍ତିଙ୍କ କନ୍ୟାଙ୍କୁ। ଅଲେଖ ପ୍ରସାଦଙ୍କ ଅତ୍ମଜୀବନୀ ମଧ୍ୟ ମୁଁ ପାଠ କରିଛି। ମୋର ସନ୍ଦେହ ହେଲା ଏହି ଦୁଇଜଣ ଯାକ ଘନଶ୍ୟାମ ଜଣେ କି? 'ପୌରୁଷ' ପତ୍ରିକା ପଢି ଜାଣିଲି ପ୍ରଫେସର ଡକ୍ଟର ନରେନ୍ଦ୍ର ପ୍ରସାଦ ଦାସ ଅଲେଖ ପ୍ରସାଦ ଦାସଙ୍କ ପୁତ୍ର। ସେଠି ଫୋନ ନମ୍ବର ଥିଲା। ସେଠି ପଚାରି ବୁଝିଲି ଏହି ଦୁଇ ଘନଶ୍ୟାମ ମହାନ୍ତି ଜଣେ। ଏହି ଦଶହରା ଭେଟି ବହିର କିଛି ଅଂଶ ଏଠି ସ୍ଥାନିତ କଲି।

# ଦଶହରା ଭେଟି



ଶ୍ରୀ ଘନଶ୍ୟାମ ମହାନ୍ତି

( ୨ )

ଥରେ ନୁହେଁ ଶହେ ଥର, କ୍ଷମା ମାଗେ ଛାମୁ ଯୋଡ଼ଣ କର ହେ,
ହୁରୁଁ କରୁଛି କୋଟି ଜୁହାର, ମଣିମା ହେ

ଦନ୍ତରେ ଢରଣ ଧରି କାତରେ ଅନ୍ତରେ ଭକତି ଭରି ହେ,
କ୍ଷମାଭିକ୍ଷା ମାଗେ ଥରି ଥରି । ...

ଦିଅ ବା ନ ଦିଅ କ୍ଷମା, ଗୁହାରି ଶୁଣିମା ହେଉ ମଣିମା ହେ,
ପାଦେ ଜୁହାର ମୋ ରହୁ ଜମା । ...

ପାଟରାଣୀ ସ୍ନେହରାଣୀ, ଚୋଟିକି ଗୋଟିଏ କନ୍ଦର୍ପଖଣି ହେ,
କ୍ଷମା ଦେବେ ପ୍ରଜାପୁଅ ଜାଣି । ...

ଯୁବରାଜ ଯୁବରାଣୀ, ରସିକ ରସିକା ମଞ୍ଜୁମଣି ହେ,
ତାଙ୍କ ପାଦେ ମୋ କ୍ଷମା ମାଗୁଣି । ...

ଲବଣୀ ପିତୁଳା ସବୁ ଚଞ୍ଚଳ ଅଞ୍ଚଳା ଚନ୍ଦ୍ରଟୋପି ହେ,
ରାଜଜେମା ଦେବେ କ୍ଷମା କରି । ...

କୋଟି କାଳ ଟୋକି ଦାସୀ, ସକଳ ତୀର୍ଥ ଯା ଚରଣବାସୀ ହେ,
ମୋତେ କ୍ଷମା ଦେବେ ହସି ହସି । ...

ଦୈବବିଧାତା ଦିଅନ, ସତେ କି ସେ ରାଜକୁଳ ବନ୍ଦନ ହେ,
ତାଙ୍କ କ୍ଷମାଦାନେ ମୋ ଧିଅନ । ...

ମନଞ୍ଜର ମ୍ୟାନେଜର କଲମେ ମାରନ୍ତି କରମଚାର ହେ,
ଟାଙ୍କୁ କ୍ଷମା ମାଗେ ଶହେ ଥର । ...

ଛାମୁଙ୍କ ଅମୁଲକାସି ତହସିଲଦାର ଜବର ହସି ହେ,
ସପନରେ ଦେଖେଁ ଯାଙ୍କ କାଶି, ...

ଜୀଅନ୍ତା-ମଲା ଅମଲା, ଲେମ ଗୋଟିକେ ଯା' କୋଟି ମାମଲା ହେ,
ପ୍ରଜାପୁଅ ଯାଙ୍କ ଶଳା, ଶାଲା, ...

ଯାଖେ ରହି କାନେ କନ୍ଧ ରକତ ଶୋଷନ୍ତି ଡାଆଁ ସନୋହ ହେ,
ତାଙ୍କୁ କ୍ଷମା ମାଗେ ଦୂରେ ରହି । ...

ହକସ୍ତା ଗୁମାସ୍ତା ଦଳ, ବଢ଼ି ନ ପାନ୍ତୁ ଯେ ଭୂଅରେ ଠୁଲ ହେ,
କ୍ଷମା ଦେବେ ଜାଣି ବେଳ କାଳ । ...

କଟୁଆଳ ଦଣ୍ଡ ଆସି,   ଦଣ୍ଡେକ ଦେବେ ଯେ ଜୀଅନ୍ତା ଗ୍ରାସି ହେ,
 କ୍ଷମା ଦେବେ ସେ, ନୁହେଁ ମୁଁ ଦୋଷୀ ।...

ଗୁଛଫୁଲ୍ଲ ବଉଳପଲ୍ଲ-   ଦଳ, ଯେ ଭଅନ୍ତି ଦମନ ପାଲ୍ଲ ହେ,
 କ୍ଷମା ଦେବେ ସେ ନୋହୁ ଅଭଲ୍ଲ । ...

କହୁଛି କର ଶପଥ,   କିଛି ନ ରଖିବି ଛଳ ଗୁପତ ହେ,
 ଫଳ ହେଉ ବା ନୋହୁ ପ୍ରାପତ. ...

ତୁଳି କାଳିଆ ସାଆନ୍ତ   ବାଲି ଗୃଲ ଗୃହିଁ ଶ୍ରୀ ଲୋକନାଥ ହେ,
 ଯାହା କହିବି ନିଘଠ ସତ ।...

ସମଚଣ୍ଡୀ ହରଚଣ୍ଡୀ   ତୁଳି କହେଁ, ଦେବ ଦ୍ରୁତ ଖଣ୍ଡି ହେ,
 ନଜ ସୁନା କେ କରଇ ଭେଣ୍ଡି ? ...

ମୁହିଁ ପଢୁଛି ପଞ୍ଜୁ ରଙ୍ଗା,   ସାତ ଥର ଯିବି ଚନ୍ଦ୍ରଭାଗା ହେ,
 ତାଙ୍କୁ ତୁଳି କହିବି ଅଭାଗା ।...

ସାକ୍ଷୀଗୋପାଳଙ୍କୁ ସାକ୍ଷୀ   କରି କହିବି ଯା ଦେଖିଛି ଆଖି ହେ,
 ସେଠେ କପଟ ଛଳ ନ ରଖି ।...

କାଇଷଦରଙ୍କର ଗ୍ରାମୁ,   ପୀର ତୁଳି ସତ କହି ପାରିବି ମୁଁ,
 ପ୍ରଜାପୁଅ ଭୂମ ପୁଅ ମାମୁଁ ।...

ଏକାମ୍ରକାନନକୁ ଯାଇ,   ତୁଳି ଲିଙ୍ଗରାଜ ପାରିବି କହି ହେ,
 ଯାହା ଦିଏ ମୋ ମରମ ଦହି ।...

ପଟିଆ ଶିଖରଚଣ୍ଡୀ   ତୁଳି କହେ ଗ୍ରାମୁ, କେଉଁଠ ତଣ୍ଡି ହେ,
 ଦେଲେ କେଳା ପରି ଦିଅ ଭଣ୍ଡି ।...

ସାତପୁରୁଷର ବନ୍ଧ   ଭାଙ୍ଗି ପଦା ହେଲା, ରହିଲ ଅନ୍ଧ ହେ,
 ଚଷାପୁଅଠାରେ କଲ ଛନ୍ଦ ।...

ଜମି ହେଲା ବାଲିଚର,   ନ ବାଞ୍ଚିଲା ତହିଁ ଲଙ୍ଗଳ ଗାର ହେ,
 ଖାଲି ବାଲିରେ ଫସଲ କାର ? ...

ଆଇନରେ ଅଛି ବାଡ଼,   ବାଲିଚର ଜମି ଖଜଣାଗ୍ରସ୍ତ ହେ,
 କର ନେଲ ମାରି ବଧାମାଡ଼ ।...

ଠକଦେଲ ଦେଖୁଁ ଦେଖୁଁ, ଖସିଯିବା ପାଇଁ ଆଇନମୁଖୁଁ ହେ,
କାଶତଣ୍ଡିକ ବୋଇଲ 'ଅଖୁ' । ...

କା ଜମି ନିଲାମ ଡାକ 'କର କମ୍ବଇଲ ଘର କୋରଣ ହେ,
ବୋହୁ ନେଲ କଂସାଲେଠାତକ । ...

ଭୋକିଲା ଶୁଖିଲା ମୁହଁ ପିଲାଙ୍କର ଦେଖି ଉଠିଲା କୋହ ହେ,
ଘର ପର କଲା ଚଷାପୁଅ । ...

କଲିକତା, କାଳିମାଟି କଲଘରେ ସଞ୍ଜ ସକାଳ ଖଟି ହେ,
ତୁମ ଲାଗି ସାଇତିଲା ମୁଠି । ...

ଦର ଉପବାସେ ରହି, ଖଜଣା ଗଣିଲା ଦୂରେ ସେ ଥାଇ ହେ,
ଝିଅ ମାଇପ ଇଜ୍ଜତ ପାଇଁ । ...

ଜାଡରେ ବଣ ହଅର, ଲଠା କାଠ କଣ୍ଠା ଜୀବିକା ଯାର ହେ,
ଦେଲ ଅନ୍ଧାର ମୁହେଁ ପାହାର । ...

କାହିଁ ଯାର ଠିକି ରକ୍ତ, ପରବା କାଟିବା ପାଇଁ ପନ୍ଦକ ହେ,
ଫୁଲେ ଶିକାରେ ପଖାଳ ଠେକି, ...

ତା ଘରେ ଫୁଲସଦାଳ ପୂରଇ କଷିଲ କମର ବଳ ହେ,
ମନ ମାନିଲା ତ ପାଇ ଫଳ ? ...

ଲାଗେ ମତେ କାଲି ପରି, ସଅରୁଣୀ ଦେଲେ ମହତ ସାରି ହେ,
ଯମ ଦୁଆରୁ ଆସିଛ ଫେରି । ...

ନ ଡର ଗୁଳି ବନ୍ଧୁକ, ନ ହଟି ରଖିଲା ଆପଣା ଠେକ ସେ,
ଧିକ ତୁମର ବୁଦ୍ଧି ବିବେକ । ...

ଶୁଣିଲ କାହିଁ ନରେଶ, ଦିନେ ଅଧେ ନୁହେଁ ବାର ବରଷ ହେ,
ହେଲା କେତେ ହନ୍ତସନ୍ତ ଶେଷ ।

ଡେଇଁ ନଈ କାଠଯୋଡ଼ା, ନାଲିଆପତାକା ଆସିଲା ଉଡ଼ି ହେ,
ଦେଖି ହଂସା ତୁମ ଗଲା ଉଡ଼ି । ...

ବହୁଶାଖ ଖଗବେଳେ ତଡ଼ା ବାଲି, ନାଲି ପତାକା ତଳେ ହେ,
ରୁଣ୍ଡ ହେଲେଁ ଗୃଷୀ ଦଳେ ଦଳେ । ...

ନାହିଁ ଶାସନ ସମତା, ନାହିଁ ଆଉ ଆମ ମେଳ ଏକତା ହେ,
ଲୋପ କଲ ଆମ ଜାତୀୟତା । ...

ଝାଉଁଳୁଛି ଜାତି ମଥା, ମଉଳୁଛି ଦେଶ ଅତୀତ ଗାଥା ହେ,
ତୁମ ଯୋଗୁଁ ଏ ହୀନ ଅବସ୍ଥା । ...

ରଖି ସତେଇଶ ଭାଗ, ଜାଳୁଛ ଅନ୍ଧାର-ଶାସନ-ଯାଗ ହେ,
ଆଣି ଭାଇ ଭାଇରେ ବିରାଗ । ...

କୋଟି କଣ୍ଠ ଫୁଟି ଦେଖ ଉଠେ ମାଆ ମାଆ ବିକଳ ଡାକ ହେ,
ଥରି ଉଠିଲାଣି ଦେବଲୋକ । ...

ଦେଖି ମାଆ ବିକଳାଙ୍ଗ ଭୁଲ ସାର୍ବଭୌମ ସୁନେଲି ରଙ୍ଗ ହେ,
ତୁମ ବୃଥା ଅଭିମାନ ଭାଙ୍ଗ । ...

ଛାଡ଼ ଐରାବତମେଳ, ଲୋଡ଼ନାହିଁ ପୋଡା ସଇନବଳ ହେ,
ତେବେ ପାଇବ କି ଅଳକୂଳ । ...

ଗୌନାଭି, କୋଶଳ ଛାଡ଼, ପଡ଼ଶା ଓଡ଼ଶା ସାଙ୍ଗରେ ଯୋଡ଼ ହେ,
ବୋଦ୍ଧ ଦଅନାହିଁ ଲେଡ଼ ଗୁଡ଼ । ...

ମୋ ଦେଶ ଜାତି ବିଶାଳ, ବିଶାଳ ନିଶାଣ ବଡ଼ ଦେଉଳ ହେ,
ବଡ଼ପଣ ରହୁ ଚିର କାଳ । ...

ମାନ୍ୟବର ମହତାବ ଯାର ପାଦଯୋଗ୍ୟ କେହି ନୋହିବ, ହେ,
ବାଢ଼ିଥିଲେ ପରା ଏ ପ୍ରସ୍ତାବ । ...

ଅସମ୍ଭବ ସମ୍ଭବିବ, ଲଙ୍କାରେ ଦେବତା ଅବତରିବ ହେ,
ସେ ତ ଅସୁରଙ୍କ ଜନ୍ମଠାବ । ...

ଧୂଧଭାତ ଯାର ଚଳା କୁଣ୍ଡୀଏ, ତାହାର ବିପଦ ବେଳା ହେ,
ଆସିଗଲା ଭାସିଯିବ ଭେଳା । ...

ଯାର ବାହୁଚ୍ଛାୟାତଳେ ଭୋଗବିଳାସରେ ବଢିଲ ହେଲେ ହେ,
ସେ ତ ଗୁଣ୍ଡିଚଲି ଏ ଅବେଳେ । ...

ନ ଦେଖି ଆମର ମେଳ ବସି କର ତୁମେ ଠାଳମଠାଳ ହେ,
ଚେତଣେ ଭଗାଶ୍ୱ କ୍ଷଣନ୍ତ ବଳ । ...

( ୨୩ )

ଭାଇ ଭାଇ ଯିବୁଁ ମିଳି   ଚୂନ କାଳି ଦେବୁଁ ମୁହଁରେ ବୋଳି ହେ,
ଖାଇ ବର୍ଷ ମାସିକିଆ ପାଳି । ...

ଦେଖି ଆମର ଏକତା   ସ୍ୱରଗୁଁ ଆଶିଷ ଦେବେ ଦେବତା ହେ,
ନଷ୍ଟ ହୋଇବୁଁ ଜଗତଜିତା । ...

ଆମେ ଯେବେ ଦେଢ଼କୋଟି   ଅଣ୍ଟା ଭିଡ଼ି ଥରେ ପଡ଼ିବୁଁ ଉଠି ହେ,
ଛିଣ୍ଡି ପାରିବ କି ରାଜ ଗୋଷ୍ଠୀ । ...

ଯେତେ ରାଜା ବାହାଦୁର   ବାହାଦୁରୀ ଦଣ୍ଡେ କରିବୁଁ ଦୂର ହେ,
ବଳେ ନେତା ହେବେ ଅଗଭର । ...

ପାହୁଛି ଉଆଁସ ନଶି,   ପୂରୁବ ଦିଗରେ ଗଲାଣି ଦିଶି ହେ,
ନାଲି ଝେହଝେହ ରବି ହସି । ...

ହାଲିଆ ନୋହ ମୋ ଭାଇ   ନାଲିଆ ସକାଳେ ଉଠନ୍ତୁ ରେଇଁ ହେ,
ଆଉ ନ ମାରି ଅଳସ ହାଇ । ...

କଙ୍ଗରେସୀ, ସାମ୍ୟବାଦୀ   ଆସିଲେଣି ହାତେ ହାତକୁ ଛନ୍ଦି ହେ,
କମ୍ୟୁନିଷ୍ଟ ମୋ   ଦେଶଦରଦୀ । ...

ମୋ ଦେଶ ସେବକଦଳ   ଚରଣେ କରୁଛି କୋଟି ଜୁହାର ହେ,
ସବେ ମିଳି କରିବେ ସମର । ...

ଫାଶ ଫାନ୍ଦି ବୁଢ଼ା ଗାନ୍ଧି   ବ୍ରିଟିଶ କେଶରୀ ପାରୁଛି ବାନ୍ଧି ହେ,
ଛୁର ଭୂମ ଏ ଫିକର ଫନ୍ଦି । ...

ଜହର ଖାଣ୍ଟି ଜହରୀ,   ଭୂମ ଚୁଟି ମୁଠା ହାତରେ ଧରି ହେ,
ଦୂରେ ବସିଛି ଜବର କରି । ...

ଆଗରପଡ଼ାର ସିଂହ   ଛୁମୁଙ୍କ ଲଗାମ ଧରିବ ଅଟ ହେ,
ମହତାବଙ୍କୁ ମାଲୁମ ବାଟ । ....

ରାଜମାଇରେ ଧୂସାଣ   ଚଉଧୁରୀ ଧରି ମନରେ ଠାଣ ହେ,
ସେଥି ହେବେଟି ମାରଣ ବାଣ । ...

ଯେବେ ଥରେ ରାଧାନାଥ   ରଥେ ଧରି ହାତେ ସମାଜ ବେତ ହେ,
ବୁଲି ଆସିବେ ଏ ଗଡ଼ଜାତ । ...

ଠେଲି ଯିବଟି ଆସନ,   ଡାକ ପଡ଼ିବ ଏ ସଭା ଶାସନ ହେ,
ବେଷ୍ଟ ମଣିବ ପିନ୍ଧା ବସନ । ...

ରଙ୍ଗପାଦ ଗୃଳ ଥିବ   ଧୀରେ ଅବେସ ଦୂରେ ଶାରଙ୍ଗଧାରୀ ହେ,
କ୍ଷିଏ ନିବ ତା ପାଲ୍କି ଉଧୁରୁ । ...

ପାଟଣାରେ ଯୁଧିଷ୍ଠିର   ଧର୍ମବାନା ଧରୁ ଏବେ ବାହାର ହେ,
ଟଳୁ କୃଷକ ଦଳ ଛିଆର । ...

ତାଳଚେର ପ୍ରଜାବଳ   ପବନ ପ୍ରଧାନ ପାଖରେ ଠୁଳ ହେ,
ଆଉ ନାହିଁଟି ତାଙ୍କୁ ଓଗାଳ । ..

ଢେଙ୍କାନାଳ ଦଣ୍ଡପାଟ   ବୀର ବଇଷ୍ଣବ ମାରେ କୁହାଟ ହେ,
ଗ୍ରାମୁ ଦେଖ ଏବେ ରାଜ ବାଟ । ...

ଥବିବ ଦେଖି ଧୁନଆଁ,   ଜଳାଇବୁଁ ଅମେ ବାହ୍ଲବ ନଆଁ ହେ,
ଦେବୁଁ ଫୁଲକା ଗାଲେଟର ଚଆଁ । ...

ଛଡ଼ାଇ ରାଜମୁକୁଟ   ପଢ଼ାଇବୁଁ ପାଠ ଚଢ଼ାଇ ଖୁଣ୍ଟ ହେ,
ଆଉ ନୋହିବ ଦେଶେ ବନ୍ତାଟ । ...

ପିମ୍ପୁଡ଼ି ନ ପାଉ ବାଟ   ଲୁଟିଥାଉ ପଟଛ ଲମ୍ବା କବାଟ ହେ,
ଆଣ୍ଠେ ପିଠା ଥାଉ କଣ୍ଟା ଖୁଣ୍ଟ । ...

ଭେଦ ପଥର ପାଚେରୀ   ଲଙ୍ଘି ରାଜ ଦରବାର କଚେରୀ ହେ,
କବ ଅଖି କାନ ଅଁସେ ଘୂରି । ...

କବନ୍ଧୁଣ୍ଡ ମୈଣ୍ଡାମୁଣ୍ଡ   ବଇଶାଖ ଝାଞ୍ଜିଠାରୁ ପ୍ରଚଣ୍ଡ ହେ,
ଦଣ୍ଡଭୟେ ନୁହେ ଲଣ୍ଡଭଣ୍ଡ । ...

କଳମ ସମ୍ବଳ ଯାର   ଡରେ କି ସେ କେବେ କମାଣ ଗୁଳ ହେ,
ସେ ତ ବାହୁବଳେ ବଳୀୟାର । ...

ଛାମୁ ଘେନୁଛ୍ଛ ମେଲଣି,   ଭେଟି କୋଟିଗୁଣେ ଦେବ ମୁଁ ପୁଣି ହେ,
ସାହା ହେଲେ ମା ସିଂହବାହିନୀ । ...

---

ମୁଦ୍ରାକର, ମହମ୍ମଦ ଅବଦୁଲ ହାଦ,ଲକ୍ଷ୍ମୀନାରାୟଣ ପ୍ରେସ,କଟକ,୧୯୪୭
ପ୍ରଥମ ମୁଦ୍ରଣ

## ୨. ଘନଶ୍ୟାମ ମିଶ୍ର

ରେଭେନ୍ସା କଲେଜର ବିଜ୍ଞାନ ପ୍ରଫେସର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧି ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି। ''ଘନଶ୍ୟାମ ମିଶ୍ର ନଥିଲେ, 'ସିଦ୍ଧାନ୍ତ ଦର୍ପଣ' କେବେ ଦେଖିନଥାନ୍ତା ଦିବା ଲୋକ।''

କିଏ ଏହି ଘନଶ୍ୟାମ ମିଶ୍ର। ମୋ ମନରେ ସବୁବେଳେ ଏକ ପ୍ରଶ୍ନ ରହିଲା। ଜଣେ ଘନଶ୍ୟାମ ମିଶ୍ର ଥିଲେ ତାଳଚେରରେ। ସେ ଲେଖିଥିଲେ କାଞ୍ଚନମାଳା। ସେଠି ପ୍ରକାଶିତ ସମ୍ବାଦପତ୍ରର ସମ୍ପାଦକ ଥିଲେ। ସେ ଏହି ଘନଶ୍ୟାମ ମିଶ୍ର ନୁହଁନ୍ତି ବୋଲି ନିଶ୍ଚିତ ହେଲି। ଏବେ ଗଲା ୨୦/୪/୨୦୨୨ ତାରିଖରେ ମୋର ବନ୍ଧୁ ଇଂ. ନାରାୟଣ ନାୟକଙ୍କ ସାଙ୍ଗରେ କଥା ହେଲି। କହିଲି, 'ତମ ଗାଁ ମୂଳବସନ୍ତ (କଟକ ଜିଲ୍ଲା) ବହୁତ ଗୁଣୀ ଲୋକଙ୍କୁ ଜନ୍ମ ଦେଇଛି।' ସେ ବାଗ୍ମୀ ବିଶ୍ୱନାଥ କର ଏବଂ ଅନ୍ୟମାନଙ୍କ କଥା କହିଲା ବେଳେ କହିଲା ଯେ ଆମ ଗାଁର ସଂସ୍କୃତ ପଣ୍ଡିତ ଘନଶ୍ୟାମ ମିଶ୍ର ଶିକ୍ଷକ ଥିଲେ। ସେ ଗଙ୍ଗାଧର ମେହେରଙ୍କ ଗୁରୁ ଥିଲେ। ସମୟକାଳ ହିସାବ କରି ନିଶ୍ଚିତ ହେଲି ଯେ ଏହି ଘନଶ୍ୟାମ ମିଶ୍ର ହିଁ ସିଦ୍ଧାନ୍ତ ଦର୍ପଣର ଅନୁବାଦକାରୀ। ଆତ୍ମଜୀବନୀ 'ଯା ମନେପଡ଼େ'ରେ ବିଦ୍ୟାନଧି ଲେଖିଥିବା ଅଂଶ ଏଠାରେ ଉଲ୍ଲେଖ କଲି।

*''କେତେମାସ ଉତାରୁ ହଠାତ୍ ଦିନେ କରଦରାଜ୍ୟ ସମୂହର ସହକାରୀ ତତ୍ତ୍ୱାବଧାରକ ସୁଦାମଚରଣ ନାୟକ (ପରେ ରାୟବାହାଦୁର)ଙ୍କ ପାଖରୁ ଖେଦାଏ ତାଳପତ୍ର ପୋଥ ପାଇଲି ଯା ପଠାଣି ସାଆନ୍ତ ପଠାଇଥିଲେ; ମାତ୍ର ସେ ପୋଥି ଏବେ କି କାମରେ ଲାଗିବ, ବୁଝିପାରିଲିନାହିଁ। ସୁଦାମବାବୁ ନିଜେ କିଛି କିନାରା କରିନପାରି ମୋ ପାଖକୁ ପଠାଇଦେଇଛି, ଅଥଚ ଓଡ଼ିଆ ଅକ୍ଷର ପଢ଼ିବା ମୋ ସାଧ୍ୟତୀତ, ଆଉ ପଢ଼ିପାରିଲେ ସୁଦ୍ଧା ଅର୍ଥବୋଧ ସମ୍ଭବ ହୁଅନ୍ତା ନାହିଁ ଜମାରୁ। ତଥାପି, ଭିତରେ କ'ଣ ଅଛି ଜାଣିବାକୁ ମନ ଆଉଟିପାଉଟି ହୋଇଚି। ଦୈବାତ୍ ଖିଆଲ ହେଲା, ସ୍କୁଲଛାତ୍ର ମୋ ପୁଅର ସଂସ୍କୃତ-ଶିକ୍ଷକ ଘନଶ୍ୟାମ ମିଶ୍ରଙ୍କୁ ପଚରାଯାଇପାରେ ସଂସ୍କୃତଭାଷା ଉପରେ ତାଙ୍କ ଦଖଲ ଥିଲା ଶ୍ଳାଘାର ବିଷୟ; ପୁଣି ତାଙ୍କ ଜୀବନର ଗତି ଥିଲା ଯେକୌଣସି ହତାଶାଗ୍ରସ୍ତ ଛାତ୍ରପାଇଁ ଆଶାର ପ୍ରଦୀପ। କଥିତ ଅଛି ବିଦ୍ୟାର ଅଧ୍ୟଷ୍ଠାତ୍ରୀ ଦେବୀଙ୍କ ସହିତ ଧନର ଅଧ୍ୟଷ୍ଠାତ୍ରୀ ଦେବୀଙ୍କ ଚିରବିବାଦ; ଘନଶ୍ୟାମ ମିଶ୍ର ଥିଲେ ପ୍ରକୃତ ବ୍ରାହ୍ମଣ, କାହିଁକିନା, ପ୍ରଥମୋକ୍ତ*

ଦେବୀଙ୍କ ଉପାସନାରେ ନିଜକୁ ଉତ୍ସର୍ଗ କରି ଦ୍ୱିତୀୟା ଦେବୀଙ୍କ ଭ୍ରୂକୁଟିକୁ କେବେ ଭ୍ରୂକ୍ଷେପ କରିନାହାନ୍ତି ଅବଶ୍ୟମ୍ଭାବୀ ଦାରିଦ୍ର୍ୟ ସତ୍ତ୍ୱେ ତାଙ୍କ ନିଜ ଗୁରୁ ବିଶ୍ୱନାଥ ଶତପଥୀଙ୍କ ପଦପ୍ରାନ୍ତରେ ବସି ଶିକ୍ଷା ଗ୍ରହଣକରିଛନ୍ତି ବୟସ ୩୫ ବର୍ଷରୁ ଉର୍ଦ୍ଧ୍ୱ ଯେତେବେଳେ। ବିଶ୍ୱନାଥଙ୍କ ବିଦ୍ୟାଚର୍ଚ୍ଚାର ପରି ବିଶ୍ୱକୋଷର ସମତୁଲ୍ୟ, ସ୍ମୃତି ମଧ୍ୟ ଥିଲା ବିଚକ୍ଷଣ, କିନ୍ତୁ ଅଭାବନୀୟ ସେ ପ୍ରତିଭା ଥିଲା ଅନେକାଂଶରେ ଅଜ୍ଞାତ। ଘନଶ୍ୟାମ ଥିଲେ ଉପଯୁକ୍ତ ଗୁରୁଙ୍କୁ ଉପଯୁକ୍ତ ଶିଷ୍ୟ; ଜ୍ୟୋତିର୍ବିଦ୍ୟାରେ ପ୍ରବେଶ ଥିଲାନାହିଁ ଅବଶ୍ୟ, ମାତ୍ର ସଂସ୍କୃତଭାଷା ଥିଲା ତାଙ୍କପାଇଁ ମାତୃଭାଷା ପରି ସ୍ୱାଭାବିକ। ପ୍ରାପ୍ତ ପୋଥିର ପ୍ରତ୍ୟେକ ଶ୍ଳୋକର ବାଚ୍ୟାର୍ଥ ଅନାୟାସରେ ବୁଝାଇଦେଇ ପାରିଥିଲେ ଏବଂ ତା' ଫଳରେ ଅଭିନବ ଏକ ଦୁନିଆର ସିଂହଦ୍ୱାର ଖୋଲି ଯାଇଥିଲା ମୋ ଆଖି ଆଗରେ, ଯୋଉ ଦୁନିଆରେ our astronomy could occupy a seat of honour beside that of Europe of pre-telescope days। ପୁଥିପାଠ ସମାପନାରେ ସୁଦାମବାବଙ୍କୁ କହିଲି, ଦେବନାଗରି ଅକ୍ଷରରେ ମୁଦ୍ରିତ ନହେଲେ ଅସାମାନ୍ୟ ଏ ଅବଲୋକନ ରହିଯିବ ଲୋକଚକ୍ଷୁ ଅନ୍ତରାଳରେ, ଏବଂ ଏକଥା ଶୁଣି ଆଠମଲ୍ଲିକ ରାଜାଙ୍କୁ ମୁଦ୍ରଣବ୍ୟୟ ବହନକରିବାକୁ ସେ ସମ୍ମତ କରାଇଥିଲେ; କିନ୍ତୁ ପାଣ୍ଡୁଲିପି ସଂପାଦନା ଓ ପ୍ରୁଫ୍ ସଂଶୋଧନ ପ୍ରଭୃତି ଶ୍ରମସାଧ୍ୟ କାମଗୁଡ଼ିକର ଦାୟିତ୍ୱ ନେବ କିଏ? ସୁଦାମବାବୁ ସେପରି ଯୋଗ୍ୟଲୋକ ଖୋଜି ପାଇଲେନାହିଁ, ମୋ ଆଖିକୁ ବି କେହି ଦିଶିଲେ ନାହିଁ ଯିଏ ଏ ପ୍ରକାର ପରିଶ୍ରମକୁ ମନେକରିବେ ବିରଳ ସୁଯୋଗ, ତେଣୁ, ଆନନ୍ଦଦାୟକ। ଶେଷକୁ ନିଜେ କାନ୍ଧ ପତାଇଦେଲି; ଜ୍ଞାନର ନୂତନ ଏକ କ୍ଷେତ୍ରରେ ପରିଭ୍ରମଣ ସେ ପ୍ରସ୍ତୁତି ଏବଂ ସେ ପରିଭ୍ରମଣ ଆନନ୍ଦମୟ, କାହିଁକିନା, ତା' ପ୍ରଭାବ ମୋ ଉପରେ ମାତୃଭୂମିର ପ୍ରଭାବ ପରି ଏକାନ୍ତ ପ୍ରିୟ। ତା' ଛଡ଼ା, ତନାଘନା ଥିଲାନାହିଁ କିଛି; ବଙ୍ଗଳା ହରଫରେ ଆଗେ ଗୋଟାଏ ପ୍ରତିଲିପି ପ୍ରସ୍ତୁତ କରାଗଲା; ପଣ୍ଡିତ ଘନଶ୍ୟାମ ମିଶ୍ର ମୋ ସାଙ୍ଗରେ ଦିନପରେ ଦିନ ବସି ନକଲ ସହିତ ଅସଲକୁ ତୁଳନାକଲେ ଏବଂ ସେଇ ପ୍ରଥମ ସାଆନ୍ତଙ୍କ ଲେଖା ଏକ ଯୁକ୍ତ ନିବିଡ଼ପଠନର ସମୀକ୍ଷାକୁ ଆସିଲା, ଯା' ବିଷୟରେ ୧୮୯୩ରେ ବଙ୍ଗଳା ମାସିକପତ୍ର ନବ୍ୟଭାରତରେ ଦୁଇଟି ରଚନା ଲେଖିଥିଲି ବୃହତ୍ତର ପାଠକସମାଜରେ

ଚନ୍ଦ୍ରଶେଖରଙ୍କୁ ପରିଚିତ କରାଇବା ସକାଶେ। ନାଗରି ପ୍ରତିଲିପି ପ୍ରେସ୍‌କୁ ପଠାଗଲା ନଭେମ୍ବର ୧୮୯୪ରେ, କିନ୍ତୁ ପ୍ରୁଫ୍ ପଢ଼ିବା ଓ ସଂଶୋଧନ କରିବାକୁ ଲାଗିଲା ଆହୁରି ଚାରିବର୍ଷ, କାହିଁକିନା, କଲିକତା ସହିତ ରେଳ-ଯୋଗାଯୋଗ ସ୍ଥାପିତ ହୋଇନାହିଁ, ପ୍ରୁଫ୍ ନେବା ଆଣିବା ସହଜ ଥିଲାନାହିଁ କି ସୁଖକର ଆମ କପାଳକୁ, ପ୍ରେସ୍ ମାଲିକ ଥିଲେ ଜଣେ ସଂସ୍କୃତଜ୍ଞ ସମଝଦାର, ନିଜ ପ୍ରେସର ସୁନାମ ଯିଏ ଅହୋରାତ୍ର ଜଗିଚଛି ଯଖଧନ ପରି। ପୁଣି ଦର୍ପଣରେ ଆଲୋଚିତ ଅନେକ ବିଷୟର ବ୍ୟାଖ୍ୟାପାଇଁ ପଠାଣି ସାଆନ୍ତଙ୍କ ସାଙ୍ଗରେ ଚିଠିପତ୍ର ବିନିମୟ କରିବାକୁ ପଡ଼ିଚି ଅନବରତ, ଆଉ ସେ ଚିଠିଗୁଡ଼ାର ବି କେହି ହ୍ରସ୍ୱ ନୁହେଁ, ମାତ୍ର ଘନଶ୍ୟାମ ମିଶ୍ରଙ୍କୁ ନପାଇଲେ ଦର୍ପଣ କେବେ ଦେଖିନଥାନ୍ତା ଦିବାଲୋକ। ତେବେ, ମୁଦ୍ରିତ ଦପର୍ଣରୁ ପ୍ରକାଶନର ଦୁଇ ରକମ ତାରିଖ ଦେଖି ଧନ୍ଦା ଲାଗିଯିବ, ଯା ଏକ ଦୁର୍ଘଟଣା-ପ୍ରସୂତ। ଉପହାର ଭାବରେ ଉପଯୋଗପାଇଁ ପ୍ରଥମେ ଛପାହୋଇଥିଲା ୬୦ କପି ମୋଟା କାଗଜରେ ବସ୍ତ୍ରବନ୍ଧାଇ ସେ ୬୦ କପି ଛଡ଼ା ଆଉ ହଜାରେ କପି ଛପାଯାଇଥିଲା ମାମୁଲି କାଗଜରେ। ମାର୍ଚ୍ଚ ୧୮୯୮ରେ ଛପାକାମ ସରିଯାଇଚି: ବହି ଆସିବାକୁ ଅନାଇ ବସିଚି, ମୁଦ୍ରକଙ୍କ ବଡ଼ଭାଇ ହରିଶ୍ଚନ୍ଦ୍ର କବିରତ୍ନ ଖବର ଦେଲେ, ହଜା ରେ ବହି ଛପାଖାନାର ଯୋଉ ଚାଳିଆ ଘରେ ଗଦା ମାରି ରଖାଯାଇଥିଲା, ସେଠି ଆକସ୍ମିକ ନିଆଁଲାଗି ପୋଡ଼ି ପାଉଁଶ ହୋଇଯାଇଛି। ସେ ଖବରରେ ବଜ୍ରାହତ ହେଲେ ସୁଦ୍ଧା, ଏତିକିମାତ୍ର ପ୍ରବୋଧ ଥିଲା ଯେ ପୁନର୍ବାର ଛାପିବାବେଳେ ଆହରି କେତେ ଭୁଲ୍ ତ୍ରୁଟି ସୁଧାରିନେବାକୁ ସୁଯୋଗ ମିଳିଲା !"

## ୩. ପଣ୍ଡିତ ଭୁବନେଶ୍ୱର ରଥ

ମୁଁ ଦିନେ ଆବିଷ୍କାର କଲି ପୁରୁଣା ବହି ଦୋକାନରୁ ପଣ୍ଡିତ ଭୁବନେଶ୍ୱର ରଥଙ୍କ ଉପରେ ଏକ ଛୋଟ ଜୀବନୀ ପୁସ୍ତକ। ବହିଟି ସଂକଳନ କରିଛନ୍ତି ତାଙ୍କ ପୁଅ ନଳୀନାକ୍ଷ ରଥ। ସେଥିରେ ଉଲ୍ଲେଖ ରହିଛି ଯେ ରାଧାନାଥ ଗ୍ରନ୍ଥାବଳୀ ପ୍ରଥମରେ ଥିବା 'ଭାରତୀ



ଗୀତିକା'ର ପ୍ରକୃତ ରଚୟିତା ହେଉଛନ୍ତି ପଣ୍ଡିତ ଭୁବନେଶ୍ୱର ରଥ। ସେ ସାକ୍ଷୀଗୋପାଳ ସ୍କୁଲରେ ଶିକ୍ଷକ ଥିଲାବେଳେ କବିବର ରାଧାନାଥ ରାୟ ସେଠାକୁ ଆସିଥିବାରୁ ତାଙ୍କୁ ଶଙ୍କୁ ରୂପେ ଉପହାର ଦେଇଥିଲେ। ଏ କଥା ମୁଁ ଜାଣି ବହିଟି ଦେଖାଇଲି ଶିକ୍ଷା ସନ୍ଧାନ ସହାୟତାରେ ଗଣେଶ୍ୱର ମିଶ୍ରଙ୍କୁ। (ବାଣୀ ବିହାରର ଇଂରାଜୀ ଅଧ୍ୟାପକ ଏବଂ ଜଣେ ବିଶିଷ୍ଟ ସାହିତ୍ୟିକ)। କିଛିଦିନ ପରେ ଏକଥା ମିଶ୍ର ସାରଙ୍କୁ ପଚାରିବାରୁ ଜାଣିଲି ଯେ ମୂଳ ବହିଟି ସେ କେଉଁଠି ରଖିଛନ୍ତି, ପାଉନାହାନ୍ତି। ପୁଣି ବହିର ଗୋଟିଏ କପି ଆଠଗଡ଼ରୁ ମଗାଇ ପଠାଇଲି ମୋର ବନ୍ଧୁ ଇଂ. ଯୁଧିଷ୍ଠିର ଶତପଥିଙ୍କ ସହାୟତାରେ। ତାଙ୍କ ଘରେ ଗୋଟିଏ ମାତ୍ର ବହିଥିବାରୁ ମୁଁ କପି କରି ମୂଳ ବହିକୁ ଫେରାଇଲି। ଏହି ସମୟରେ ପ୍ରଫେସର ଧନେଶ୍ୱର ମହାପାତ୍ର ସମାଜରେ ଏକ ଲେଖା ପ୍ରକାଶ କଲେ ଯେ ଭାରତ ଗୀତିକାର ପ୍ରକୃତ ଲେଖକ ହେଉଛନ୍ତି ପଣ୍ଡିତ ଭୁବନେଶ୍ୱର ରଥ, କବିବର ରାଧାନାଥ ରାୟ ନୁହନ୍ତି। ମୁଁ ପଣ୍ଡିତ ଭୁବନେଶ୍ୱର ରଥଙ୍କ ଉପରେ ଏକ ଆଲେଖ୍ୟ ଲେଖିଲି ତାଙ୍କର କାର୍ଯ୍ୟକଳାପ ଏବଂ ଲେଖା ଉପରେ। ଏବଂ ପଠାଇଲି ପୌରୁଷରେ ପ୍ରକାଶ ପାଇଁ ମାତ୍ର ସମ୍ପାଦକ ଏହାକୁ ଏଡିଟ୍ କରି ଭାରତୀ ଗୀତିକାକୁ କାଟିକରି ଛପାଇଲେ। ଏହି ସମୟରେ ଖବରକାଗଜରେ ଏହା ଉପରେ ବାଦବିବାଦ ମଧ୍ୟ ଉଠିଲା। ମୁଁ ଏକଥା ସୁଲେଖକ ଅସିତ ମହାନ୍ତି ଏବଂ ବାଗ୍ମୀ ଡ. କୃଷ୍ଣକେଶବ ଷଡଙ୍ଗୀଙ୍କ ସାଙ୍ଗେ ମଧ୍ୟ କଥା ହୋଇଛି। ଦୁର୍ଗାଚରଣ ରାୟଙ୍କ ସଂକଳିତ ରାଧାନାଥ ଜୀବନୀ ଏବଂ ରାଧାନାଥ ଗ୍ରନ୍ଥାବଳୀ ପାଠ କରି ମୁଁ ଅନୁଭବ କଲି ଯେ ରାଧାନାଥ ଯେ ସଂସ୍କୃତରେ ଅନଭିଜ୍ଞ ଏ କଥା ନୁହେଁ।

ଏହି ସଂସ୍କୃତ ଗୀତଟିରେ ଅଛି ମୋଟ ୨୦ଟି ପଦ। ପ୍ରଥମେ ୧୪ଟି ଥିଲା ଏବଂ ପରେ ୬ଟି ପଦ ଯୋଗ କରାଯାଇଛି। 'ରାଧାନାଥ ଜୀବନୀ' ସଂକଳନ ୧୯୪୦, ଦୁର୍ଗାଚରଣ ରାୟ, ପୃଷ୍ଠା-୫୧୩ରେ ଲେଖା ଅଛି।

*'୧୬ ତାରିଖ ରାତ୍ରିରେ ରାଧାନାଥ ମାନବଲୀଳା ସମ୍ବରଣ କଲେ। ୧୭ ତାରିଖ ଶୁକ୍ରବାର ଦିନ ପୁରୀରେ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ ହୋଇଥିଲା। କଟକରୁ ଅଧିକାଂଶ ଲୋକେ ପୁରୀ ଯାଇଥିଲେ। ପୁରୀରେ ସମ୍ମିଳନୀର ଅଧିବେଶନ ହେବା ସକାଶେ ମାଲ୍ୟଗିରି ପର୍ବତ ଉପରେ*

ଶରଣକୁଳ ଭିକାରିପଡ଼ା ରେ ଜନ୍ମ। ସାହିତ୍ୟିକା ଅନେକ ଦିନ ଧରି ଧରିତ୍ରୀ ଖବର କାଗଜ ରେ ସଂପାଦକୀୟ କାର୍ଯ୍ୟ କରୁଥିଲେ। ସେ ଥିଲେ ସାମାଜିକ କର୍ମରେ ଅଗ୍ରଣୀ।ବିଧବା ବିବାହ ପାଇଂ. ଅନେକ କାର୍ଯ୍ୟ କରିଛନ୍ତି। ପରେ ଲୋକ ସମ୍ପର୍କ ବିଭାଗରେ ଜିଲ୍ଲା ମଙ୍ଗଳ ଅଧିକାରୀ ହୋଇ କାମ କରିଥିଲେ। ସେ ଅନେକ କବିତା ପୁସ୍ତକ ରଚନା କରିଛନ୍ତି।

---



କୁମାରୀ ବିଜୟଲକ୍ଷ୍ମୀ ଦୋରା

ଆବିର୍ଭାବ-୧୨।୦୪।୧୯୫୪

ତିରୋଧାନ-୧୯।୦୫।୨୦୦୮

ବିଜୟଲକ୍ଷ୍ମୀ ଇଂରାଜୀ ଅଧ୍ୟାପିକା ଥିଲେ। ସେ ମୋର ଇଞ୍ଜିନିଅରିଂ ସ୍କୁଲ କ୍ଲାସମେଟ ଇଂ. A. ବାଲକୃଷ୍ଣ ଦୋରାଙ୍କ ଭଉଣୀ।ବାଲକୃଷ୍ଣଙ୍କ ନିଜଘରଦିଗପହଣ୍ଡି।

---



ଗୋକୁଳ ଚନ୍ଦ୍ର କାନୁନଗୋ

ଆବିର୍ଭାବ-ଫେବୃଆରୀ ୧୯୧୩

ତିରୋଧାନ-୨୭।୦୭।୨୦୦୯

ସେ ପ୍ରଥମେ ଶିକ୍ଷକ ଥିଲେ। ତାପରେ P.W.D ଠିକାଦାରୀ କର୍ମ କଲେ। ୫ ନମ୍ବର ଜାତୀୟ ରାଜ ପଥ ଓ ଦୈତାରୀ ପାରାଦ୍ୱୀପ ରାଜପଥ ନିର୍ମାଣରେ ତାଙ୍କର ବିଶେଷ ଯୋଗଦାନ ରହିଛି। ଓଡିଆ ସିନେମା "ଶ୍ରୀ ଲୋକନାଥ"ପ୍ରଯୋଜନା କରି ରାଷ୍ଟ୍ରପତିଙ୍କ ପୁରସ୍କାର ପାଇଥିଲେ।

ସେ ବହୁତ ଲୋକଙ୍କୁ ସାହାଯ୍ୟ କରିଛନ୍ତି। ବିଧାୟକ ସରୋଜ କାନୁନଗୋ ତାଙ୍କର ବଡ ଭାଇ ଅଟନ୍ତି।

---



ପ୍ରଫେସର ସର୍ବେଶ୍ୱର ଦାସ

ଆବିର୍ଭାବ-୦୪।୧୦।୨୦୦୯

ତିରୋଧାନ-୧୨।୦୧।୧୯୨୫

ଗାନ୍ଧୀବାଦୀ ଇଂରାଜୀ ଅଧ୍ୟାପକ। ୨୫ ଟି ଗ୍ରନ୍ଥ ରଚନା କରିଛନ୍ତି। ତାଙ୍କ ଆତ୍ମଜୀବନୀ ପ୍ରକାଶ ପାଇଛି। ଶିକ୍ଷା ସନ୍ଧାନ ଅନୁଷ୍ଠାନରେ ବହୁତ ଥର ଦେଖା ହୋଇଛି।ତାଙ୍କର ପତ୍ନୀ ବସନ୍ତ କୁମାରୀ ଦେବୀ ଜଣେ ଲେଖିକା ଓ ଅନୁବାଦିକା। ବସନ୍ତ କୁମାରୀ ଜଷ୍ଟିସ

ଅଭିମନ୍ୟୁ ମିଶ୍ରଙ୍କ କନ୍ୟା।

ସର୍ବେଶ୍ୱରଙ୍କ ପିତା ଗୋପୀନାଥ ଦାସ ଜଣେ ଡେପୁଟି କଲେକ୍ଟର ଥିଲେ। ସର୍ବେଶ୍ୱର ତାଙ୍କ ବାପା ଲେଖିଥିବା ରଚନାକୁ "ଗୋପୀନାଥ ରଚନାବଳୀ" ନାମିତ କରି ପ୍ରକାଶ କରି ଅଛନ୍ତି। ବହିର ପୃଷ୍ଠା ୬୫ ଏବଂ ଦାମ ୫୦/। ୨୦୦୭ ମସିହାରେ ଛପାଯାଇଛି। ସର୍ବେଶ୍ୱରଙ୍କ ସାନ ଭାଇ ଲିଙ୍ଗରାଜ ଦାସ ରାଜ୍ୟ ସରକାରଙ୍କ P.H.E (ପବ୍ଲିକ ହେଲଥ ଇଞ୍ଜିନିଅର) ଥିଲେ। ସେତେବେଳେ P.H ଡିପାର୍ଟମେଣ୍ଟ ପୂର୍ତ୍ତ ବିଭାଗରେ ମିଶି କରି ଥିଲା।

---



ଇଂ. ମଧୁସୂଦନ ମିଶ୍ର
ଆବିର୍ଭାବ
ତିରୋଧା:

ମଧୁସୂଦନ ଡିପ୍ଲୋମା ଇଞ୍ଜିନିଅର ଥିଲେ। ସେ ନୟାଗଡରେ P.W.D. S.D.O ହିସାବରେ କର୍ମ କରୁଥିଲେ ୧୯୬୫ ମସିହାରେ ମୋର ସାଙ୍ଗ ଇଂ. ଦେବରାଜ ଦାସ ତାଙ୍କ ଅଧିନରେ ଓଡଗାଁ ସେକସନ ରେ ଜୁନିଅର ଇଞ୍ଜିନିଅର ଥିଲେ।

---



ଇଂ. ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ
ଆବିର୍ଭାବ-୦୩।୦୯।୧୯୩୬
ତିରୋଧାନ-୨୯।୧୦।୧୯୯୯

ଡିପ୍ଲୋମା ପରେ AMIE ପାସ କରିଛନ୍ତି। ଇଂ. ଗୋବିନ୍ଦ ପବ୍ଲିକ ହେଲଥ (ଇଞ୍ଜିନିଅରିଂ) ରେ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଇଛନ୍ତି।

---



ନିର୍ମଳ ମହାନ୍ତି OAS
ଆବିର୍ଭାବ-୧୯୩୮
ତିରୋଧାନ-୦୨।୦୧।୨୦୦୯

ନିର୍ମଳ ବାବୁ ଭୁବନେଶ୍ୱରରେ ତହସିଲଦାର ଥିଲେ। ମୁଁ ୧୯୬୨ ରେ କଟକ ପାରାଡାଇଜ ମେସରେ ଥିଲାବେଳେ ସେ ମଧ୍ୟ ଗୋଟିଏ ରୁମରେ ରହୁଥିଲେ। ସେହି ସମୟରେ OAS ପାଇଥିଲେ।

---



ଲକ୍ଷ୍ମଣ ପାଳ
ଆବିର୍ଭାବ-୦୯।୦୨।୧୯୧୧
ତିରୋଧାନ-୧୦।୦୨।୨୦୦୯

ଶରଣକୁଳ ପାଖ ଶିଖରପୁର ଗ୍ରାମରେ ଜନ୍ମ। ଗାଁ ରେ ବିଭିନ୍ନ ପ୍ରକାର ଉନ୍ନୟନ କାର୍ଯ୍ୟ କରିଛନ୍ତି।

---



ଗନ୍ତାୟତ ସାହୁ
ଆବିର୍ଭାବ-୧୯୩୬
ତିରୋଧାନ-୦୧।୦୨।୨୦୧୦

ଜନ୍ମ ପୋଲସରା,ଗଞ୍ଜାମ। ଚିଫ ଇଞ୍ଜିନିଅର N.H ଅଫିସରେ ଏଷ୍ଟାବ୍ଲିସମେଣ୍ଟ ଅଫିସର ହୋଇ ଅବସର ନେଲେ। ମୁଁ C.E.N.H. ଅଫିସରେ Estimator ଥିଲାବେଳେ ସେ ଆମ ବ୍ରାଞ୍ଚ ପାଇଁ. ସହକାରୀ ଥିଲେ।

---



ଇଂ. ସଚ୍ଚିଦାନନ୍ଦ ଦଲାଲ
ଆବିର୍ଭାବ-୧୯୩୬
ତିରୋଧାନ-୦୧।୦୨।୨୦୧୦

ଜନ୍ମ ସ୍ଥାନ ବଉଦ। ଜଳ ସେଚନ ବିଭାଗରେ ଇଞ୍ଜିନିଅରିଂରେ ଡିପ୍ଲୋମା କରି ସହକାରୀ ଯନ୍ତ୍ରୀ ହୋଇ ଅବସର ନେଲେ। ଆମ କଲୋନି ପାଖରେ ରହୁଥିଲେ।

---



ଗୋବିନ୍ଦ ଚନ୍ଦ୍ର ଦାସଘୋଷ
ଆବିର୍ଭାବ-୧୯।୦୯।୧୯୧୯
ତିରୋଧାନ-୨୨।୦୨।୨୦୧୦

ରାଜ୍ୟ ସରକାରଙ୍କ ନିର୍ମାଣ ବିଭାଗରେ ଅଣ୍ଡର ସେକ୍ରେଟେରି ଥିଲେ। ଆମ୍ଭମାନଙ୍କର A.E ପ୍ରମୋସନ ନିଯୁକ୍ତିରେ ବହୁତ ସାହାଯ୍ୟ କରିଛନ୍ତି।

---



ଇଂ. ନିରଞ୍ଜନ ରାଉତ
ଆବିର୍ଭାବ-୧୨।୦୫।୧୯୪୩
ତିରୋଧାନ-୧୮।୦୩।୨୦୦୪

ସେ ନିର୍ମାଣ ବିଭାଗର ଅବସର ପ୍ରାପ୍ତ ଅଧ୍ୟକ୍ଷଣ ଯନ୍ତ୍ରୀ ଥିଲେ। କଟକ ଇଞ୍ଜିନିଅରିଂ ସ୍କୁଲରୁ ୧୯୬୩ ରେ ପାସ କରି ପରେ AMIE କରିଥିଲେ। ମୋର ସାଙ୍ଗ ଯୁଧିଷ୍ଠିର ଶତପଥିଙ୍କ ସାଙ୍ଗ।



ମୌସୁମୀ ପ୍ରଧାନ
ଆବିର୍ଭାବ-୧୯୬୬
ତିରୋଧାନ-୩୧।୦୩।୨୦୧୦

ସେ ଓଡିଶାର ନଗର ଉନ୍ନୟନ ବିଭାଗର ମନ୍ତ୍ରୀ ତଥା ଲୋକସଭା ସଦସ୍ୟ ଅମର ପ୍ରଧାନଙ୍କ ଧର୍ମପତ୍ନୀ। ମୌସୁମୀଙ୍କ ପିତା ବିଷ୍ଣୁବାବୁ ତାଲଚେର ଫଟିଲାଇଜରକର୍ପୋରେସନରେ କାମ କରୁଥିଲେ। ଆମ ଗାଁ ଦଣ୍ଡଧର ନାଏକଙ୍କ ବନ୍ଧୁ ହେଉଛନ୍ତି ବିଷ୍ଣୁବାବୁ। ସେ ମହାନଦୀ ବିହାରରେ ରହୁଛନ୍ତି।



ପ୍ରଫେସର ଡାକ୍ତର ବିଭୁତି ଭୂଷଣ ତ୍ରିପାଠୀ
ଆବିର୍ଭାବ-୧୯୨୩
ତିରୋଧାନ-୦୧।୦୪୧।୨୦୧୦

ବାଙ୍କିରେ ଜନ୍ମ। ଓଡିଶାର ବିଦ୍ୟାସାଗର ବୈରାଗୀ ମିଶ୍ରଙ୍କ ସମାଜ ସେବା କାମରେ ସହଯୋଗୀ। ତାଙ୍କ ସାନ ଭାଇ ଇଂ. ବିଜୟାନନ୍ଦଙ୍କୁ ମାତ୍ର ଟ୧୦ଙ୍କା ଖର୍ଚ୍ଚ କରି ଆଦର୍ଶ ବିବାହ କରାଇଥିଲେ ବାରିପଦାରେ। Dr ତ୍ରିପାଠୀ ଓଡିଶାର ପ୍ରଥମ ଡାଇବେଟିକ ପ୍ରଫେସର। ମୋର ପତ୍ନୀ ୧୯୭୦ ମସିହାରେ ତାଙ୍କରି ତତ୍ତ୍ୱାବଧାନରେ ରହି ଭଲ ହୋଇଥିଲେ।



ଡ. ରାଇ କୃଷ୍ଣ ମହାନ୍ତି

ଆବିର୍ଭାବ-୦୬।୧୦।୧୯୦୬
ତିରୋଧାନ-୦୧।୦୬।୧୯୯୧

ଡାକ୍ତର ରାଇକୃଷ୍ଣ ମହାନ୍ତି କଟକ ମେଡିକାଲ କଲେଜର ପ୍ରିନସିପାଲ ଥିଲେ। ସେ ଆନାଟୋମିର ପ୍ରଫେସର ଥିଲାବେଳେ ଡାକ୍ତର ସତ୍ୟବାଦୀ ହଜାରୀଙ୍କୁ ଆନାଟୋମିରେ ରଖି MD କରିବା ପାଇଂ. ସ୍କଲାରସିପର ବନ୍ଦୋବସ୍ତ କରିଥିଲେ। ପୂର୍ତ୍ତବିଭାଗର ଇଞ୍ଜିନିଅର ବରେନ୍ଦ୍ର କୁମାର ଦାସ(୧୯୬୦ ବୁର୍ଲା ଇଞ୍ଜିନିଅରିଂ କଲେଜ ବ୍ୟାଚ) ତାଙ୍କର ଜାମାତା ଅଟନ୍ତି। ବରେନ୍ଦ୍ର ବାବୁ Ast.to C.E (R&B) (୧୯୯୦) ଥିଲାବେଳେ ନୂଆ ଜଗନ୍ନାଥ ସଡକର ଉନ୍ନତି କରଣ ପାଇଁ ବହୁ ଉପଦେଶ ଦେଇଥିଲେ।

---



ରଘୁନାଥ ରଥ
ଆବିର୍ଭାବ-୧୫।୦୧।୧୯୩୯
ତିରୋଧାନ-୨୧।୦୪।୨୦୧୬

ସେ ଥିଲେ ଭୂତତ୍ତ୍ୱବୀଦ। ଡ଼ିରେକ୍ଟର ପଦରୁ ଅବସର ନେଇଥିଲେ। ତାଙ୍କ ସାନ ଭାଇ ଇଂ. ଲକ୍ଷ୍ମଣ ରଥ ଜଣେ କଳାକାର। ରଘୁନାଥ ବାବୁଙ୍କ ଦେଖା ହୁଏ Morningwalkରେ। ତାଙ୍କ ପିତା ଜଣେ ସ୍ୱନାମ ଧନ୍ୟ ପ୍ରଧାନ ଶିକ୍ଷକ। ତାଙ୍କ ଘର ବଡମ୍ବା ନରସିଂହପୁର।

---



ପ୍ରଫୁଲ ଚନ୍ଦ୍ର ମିଶ୍ର IPS
ଆବିର୍ଭାବ-୩୦।୦୬।୧୯୪୬
ତିରୋଧାନ-୨୮।୦୬।୨୦୧୦

ଜନ୍ମସ୍ଥାନ ଶରଣକୁଳ। ସେ ଅତିରିକ୍ତ ପୋଲିସ D.G ଥିଲେ। ନୟାଗଡର ବହୁତ ପିଲାଙ୍କୁ ସେ ଚାକିରିରେ ନିଯୁକ୍ତି ଦେଇଛନ୍ତି। ଗୋଡ଼ିପଡା M.E. school ହେଡ଼ମାଷ୍ଟର ଶରଣକୁଳ ଥାନା କୃଷ୍ଣଚନ୍ଦ୍ରପୁରର ଗଦାଧର ମହାପାତ୍ରଙ୍କ ସେ ଜାମାତା। ତାଙ୍କର ପିତା ଚିନ୍ତାମଣି ମିଶ୍ର ମୁକ୍ତାର ଥିଲେ। ରାଜସୁନାଖେଳାର ସୁରେନ୍ଦ୍ର ମିଶ୍ର (M.L.A) ତାଙ୍କର ଭିଣୋଇ ଅଟନ୍ତି। ଶରଣକୁଳ ହାଇସ୍କୁଲର ରୌପ୍ୟ ଜୟନ୍ତୀ ଉତ୍ସବ ସେ କରାଇଥିଲେ ୧୯୯୬ରେ।

---



ତ୍ରିଲୋଚନ କର
ଆବିର୍ଭାବ-୧୯୩୮
ତିରୋଧାନ-୨୯।୦୫।୨୦୧୦

ଜନ୍ମିତ ଗ୍ରାମ ସାନଗୋରଡା (ଶରଣକୁଳ ଥାନା) ଡାକ ବିଭାଗରେ କାମ କରି ସୁନାମ ଅର୍ଜନ କରିଥିଲେ। କର୍ତ୍ତବ୍ୟ ନିଷ୍ଠା ପାଇଁ ରାଷ୍ଟ୍ରପତି ପୁରସ୍କାର ପାଇଥିଲେ। ତାଙ୍କର ଜଣେ ପୁଅ Dr ବିକାଶ ରଞ୍ଜନ କର ଏବେ ସମ୍ ହାସପାତାଲ ରେ ଚର୍ମ ରୋଗର ପ୍ରଫେସର ଅଛନ୍ତି। ତ୍ରିଲୋଚନ ମୋର L.P.School ସହପାଠୀ। ୧୯୫୭ ରେ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ କଲେ କଜଲାଇ ପଲ୍ଲୀ ହାଇସ୍କୁଲରୁ।

---



ଇଂ. ନିମାଇ ଚରଣ ପଟ୍ଟନାୟକ
ଆବିର୍ଭାବ-୧୧।୧୨।୧୯୪୬
ତିରୋଧାନ-୧୮।୦୬।୨୦୦୬

ସେ ରୁରାଲ ଇଞ୍ଜିନିଅରିଂ ସଂଗଠନରେ ନିର୍ବାହୀ ଯନ୍ତ୍ରୀ ରୂପେ କାମ କରି ଅବସର ନେଇଥିଲେ। ଜମି ଗଣ୍ଡ ଗୋଳରେ ସେ ହତ୍ୟାର ଶିକାର ହେଲେ। ମୁଁ ଫୁଲବାଣୀରେ A.E.E ଥିଲା ବେଳେ ସେ ପୁରଣାକଟକ ରେ SDO ଥିଲେ।

---



ଇଂ. ସନ୍ତୋଷ କୁମାର ବସା
ଆବିର୍ଭାବ-୦୧।୦୯।୧୯୨୦
ତିରୋଧାନ-୧୬।୦୬।୨୦୧୦

ଡିପ୍ଲୋମା ଇଞ୍ଜିନିଅର। ଇଂ. ବସା ବହୁତ ଦିନ ଚିଫ ଇଞ୍ଜିନିଅର ଅଫିସରେ ଏଷ୍ଟିମେଟିଂ ବ୍ରାଞ୍ଚରେ ସୁପରିଟେଣ୍ଟେଣ୍ଟ ହୋଇ ଅବସର ନେଇଥିଲେ।

---



ଡକ୍ଟର ନରସିଂହ ଆଚାର୍ଯ୍ୟ
ଆବିର୍ଭାବ-୦୮।୦୮।୧୯୨୨

ତିରୋଧାନ-୧୦।୦୭।୨୦୧୦

ଜନ୍ମ ନୟାଗଡ଼। ସେ L.M.P କରି ପରେ କଣ୍ଡେନସ କୋର୍ଷ କରି MBBS ପାସ କଲେ। ସର୍ଜେରିରେ M.S କରି ଭୁବନେଶ୍ୱର କ୍ୟାପିଟାଲ ହାସପାତାଲରେ ବହୁତ ଦିନ ଥିଲେ। ଶରଣକୁଳର ଚକ୍ଷୁ ଡାକ୍ତର ✓ଶଶୀଶେଖର କର ତାଙ୍କର ଶ୍ୟାଳକ ଅଟନ୍ତି। ମୁଁ ୧୯୬୭ରେ ତାଙ୍କ ଦ୍ୱାରା ମୋର Piles ଅପରେସନ କରାଇଥିଲି।



ଉମାଶଙ୍କର ପୁରୋହିତ

ଆବିର୍ଭାବ-୧୧।୧୧।୧୯୩୫

ତିରୋଧାନ-୩୦।୦୭।୨୦୦୯

ସେ ଜଣେ OAS ଅଫିସର ଥିଲେ। ମୁଜାଫର ହୋସେନ ପୂର୍ତ୍ତ ବିଭାଗ ଯନ୍ତ୍ରୀ ଥିଲା ବେଳେ ତାଙ୍କର ପ୍ରାଇଭେଟ ସେକ୍ରେଟେରି ଥିଲେ।



ଇଂ. ପ୍ରଫୁଲ କୁମାର ସାହୁ

ଆବିର୍ଭାବ-୨୭।୦୭।୧୯୩୮

ତିରୋଧାନ-୧୬।୦୭।୨୦୦୯

ନିର୍ମାଣ ବିଭାଗରେ ନିର୍ବାହୀ ଯନ୍ତ୍ରୀ ଥିଲେ। ଅବସର ପରେ ଦେଓଘର ସଂସ୍ଥା (ଅନୁକୁଳଚନ୍ଦ୍ରଙ୍କ) ରେ କାମ କରି ଋତ୍ୱିକ ହୋଇଥିଲେ।



ଇଂ. M.I.M ପଟ୍ଟନାୟକ

ଆବିର୍ଭାବ-୦୭।୦୩।୧୯୩୬

ତିରୋଧାନ-୧୫।୦୯।୨୦୧୦

ସେ ନିର୍ମାଣ ବିଭାଗରୁ ଅଧୀକ୍ଷଣ ଯନ୍ତ୍ରୀ ହୋଇ ଅବସର ନେଇଥିଲେ। ସେ ଜଣେ କର୍ମଠ ଇଞ୍ଜିନିଅର। କଟକର ରେଳଷ୍ଟେସନ ପାଖ ଫ୍ଲାଏ ଓଭର, Indoor Stadium ତାଙ୍କର କୃତୀ।



ଇଂ. ଗୁରୁଦେବ ଗଡନାୟକ
ଆବିର୍ଭାବ-୨୪।୦୨।୧୯୩୮
ତିରୋଧାନ-୧୯।୦୮।୨୦୧୦

ଘର ଅନୁଗୁଳ। ସେ କଟକ ଇଞ୍ଜିନିଅରିଂ ସ୍କୁଲରୁ ୧୯୫୯ରେ ପାସ କରି ପରେ AMIE ପାସ କରିଥିଲେ। ପୂର୍ତ୍ତ ବିଭାଗରେ ନିର୍ବାହୀ ଯନ୍ତ୍ରୀ ପଦରେ କାମ କରି ଅବସର ନେଇଥିଲେ।



ଇଂ. ହରେକୃଷ୍ଣ ଖୁଣ୍ଟିଆ
ଆବିର୍ଭାବ-୨୫।୦୫।୧୯୩୭
ତିରୋଧାନ-୧୯।୦୯।୨୦୧୦

ସେ କଟକ ଇଞ୍ଜିନିଅର ସ୍କୁଲରୁ ୧୯୫୯ ରେ(ମୋ ଉପର ବ୍ୟାଚ) ପାସ କରି ପରେ A.M.I.E ପରୀକ୍ଷା ଦେଇ ପାସ କରିଥିଲେ। ସେ ପାରାଦ୍ୱୀପ ପୋର୍ଟ ସଂସ୍ଥାର କାମ କରି ଅଧୀକ୍ଷଣ ଯନ୍ତ୍ରୀ ହୋଇ ଅବସର ନେଲେ।



ଇଂ. ମନୋରଞ୍ଜନ ସାମଲ
ଆବିର୍ଭାବ-୧୯୪୦
ତିରୋଧାନ-୨୭।୦୯।୧୯୮୭

ସେ ୧୯୬୨ ରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ପ୍ରଥମ ହୋଇ ପାସ କରିଥିଲେ। ରାଜ୍ୟ ସରକାର ପୂର୍ତ୍ତ ବିଭାଗରେ ନିର୍ବାହୀ ଯନ୍ତ୍ରୀ ହୋଇ କାମ କରୁଥିଲା ବେଳେ ଡାଇବେଟିକ ରୋଗରେ ମୃତ ହୋଇଥିଲେ। ମୁଁ କଟକ ଇଞ୍ଜିନିଅରିଂ ସ୍କୁଲର ଆଠଗଡ ହଷ୍ଟେଲରେ ରହୁଥିବା ବେଳେ ସେ ଆମ ରୁମକୁ ଆସନ୍ତି। ଆମ ରୁମରେ ତାଙ୍କର ରିଲେସନ ପତିତପାବନ ସାହାଣୀ ରହୁଥିଲେ।



ଇଂ. ଉମାମହେଶ୍ୱର ପଟ୍ଟନାୟକ
ଆବିର୍ଭାବ-୨୮।୦୩।୧୯୩୫
ତିରୋଧାନ-୧୫।୦୯।୨୦୧୦

ଉମା ମହେଶ୍ୱର ଡିପ୍ଲୋମା ଇଞ୍ଜିନିଅରିଂ କରି ପରେ A.M.I.E

ପାସ କରିଥିଲେ। ୧୯୭୮ ରେ ସେ ଚିଫ ଇଞ୍ଜିନିଅର ଅଫିସର ପ୍ଲାନିଙ୍ଗ ଅଫିସର ଥିଲାବେଳେ ମୁଁ planning ବ୍ରାଞ୍ଚରେ J.E ଥିଲି। ଅତ୍ୟନ୍ତ ଧିରସ୍ଥିର।



ଇଂ. ନବ କୁମାର ମିଶ୍ର
ଆବିର୍ଭାବ-୩୧।୦୩।୧୯୩୨
ତିରୋଧାନ-୧୪।୦୨।୨୦୧୧

ତାଳଚେର ରେ ଜନ୍ମ। ଡିପ୍ଲୋମା ଇଞ୍ଜିନିଅର ସର୍ଭିସର ୟୁନିଅନ ଲିଡର। ସେ ପି.ଏଚ (Eng)ବିଭାଗରେ କାମ କରୁଥିଲେ। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ।



ଅଧ୍ୟାପିକା ଅର୍ନ୍ନପୁର୍ଣା ଶତପଥି
ଆବିର୍ଭାବ-୧୫।୦୭।୧୯୪୬
ତିରୋଧାନ-୨୩।୧୧।୨୦୧୧

ଘର ଚାନ୍ଦୋଳ। ୧୯୭୦ ମସିହାରେ ମୋ ସ୍ତ୍ରୀ ଲାବଣ୍ୟ କଟକ ମେଡିକାଲରେ ଚିକିତ୍ସିତ ହେଉଥିଲା ବେଳେ ସେ ମଧ୍ୟ ରୋଗୀ ହିସାବରେ ସେଠାକୁ ଆସିଲେ। ତାଙ୍କର ଫୁସ୍ ଫୁସ୍ ରେ ଘା ହୋଇଥିଲା। ସେ ବିବାହ କରିନାହାନ୍ତି। ଅଧ୍ୟାପକ ତ୍ରିଲୋଚନ ଶତପଥିଙ୍କ ଭଉଣୀ। ସେ ଅର୍ଥନୀତିରେ ଅଧ୍ୟାପକଥିଲେ।



ଇଂ. ବୀରେନ୍ ଚନ୍ଦ୍ର ପଟ୍ଟନାୟକ
ଆବିର୍ଭାବ-୧୦।୧୧।୧୯୨୭
ତିରୋଧାନ-୨୦।୧୨।୨୦୧୦

ସେ ଜଳସେଚନ ବିଭାଗର ମୁଖ୍ୟଯନ୍ତ୍ରୀ ଥିଲେ। Institute of Engineer(India) ର ଓଡିଶା ଶାଖାର ସଭାପତି ଥିଲେ। D.A.V ପରିଚାଳନା ବୋର୍ଡର ମୁଖ୍ୟ ଥିଲେ।



ଇଂ. ଅମରେନ୍ଦ୍ର କୁମାର ମହାପାତ୍ର

ଆବିର୍ଭାବ-୨୫।୦୭।୧୯୨୫
ତିରୋଧାନ-୨୩।୧୧।୨୦୦୮

ଜଳସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ ଥିଲେ। ସେ ଶିଳ୍ପ ବିଭାଗ ମୁଖ୍ୟ ଉପଦେଷ୍ଟା ହରିବନ୍ଧୁ ମହାନ୍ତିଙ୍କ ଜାମାତା।

---



ଗୌରୀଶ୍ୟାମ ନାୟକ
ଆବିର୍ଭାବ-୧୮।୦୯।୧୯୧୮
ତିରୋଧାନ-୨୪।୧୨।୨୦୦୭

ସ୍ୱାଧୀନତା ଆନ୍ଦୋଳନରେ ସମୟରେ ୧୯୪୨ ରେ ସେ ଏରସମା ଥାନା ପୋଡି ଦେଇଥିଲେ। ମୋର ବନ୍ଧୁ ଇଞ୍ଜିନିଅର ନଗେନ୍ଦ୍ର ମହାନ୍ତିଙ୍କ ଭିଣୋଇଙ୍କ ପିତା।

---



ଇଂ. ଉଦୟ ଚନ୍ଦ୍ର ପଣ୍ଡା
ଆବିର୍ଭାବ-୨୦।୧୧।୧୯୩୪
ତିରୋଧାନ-୨୧।୦୨।୨୦୦୯

କଟକ ଇଂଜିନିଅରିଂ ସ୍କୁଲର ପ୍ରିନସିପାଲ ଥିଲେ।

---



ଡାକ୍ତର ସୂର୍ଯ୍ୟମଣି ମିତ୍ର
ଆବିର୍ଭାବ-୧୯୨୪
ତିରୋଧାନ-୦୬।୦୬।୨୦୦୯

ଡାକ୍ତରସୂର୍ଯ୍ୟମଣି ମିତ୍ର ପ୍ରଫେସର ଡାକ୍ତର ସୁକୁମାର ମିତ୍ରଙ୍କ ଧର୍ମପତ୍ନୀ। ଭରତ ଚନ୍ଦ୍ର ନାୟକ ଏହାଙ୍କୁ ନିଜର କନ୍ୟା ରୂପେ ଗ୍ରହଣ କରି ଉଚ୍ଚ ଶିକ୍ଷାର ଦାୟିତ୍ୱ ନେଇଥିଲେ। ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷାମନ୍ତ୍ରୀ ଥିଲାବେଳେ ତାଙ୍କୁ କହିବାରୁ ସେ ପାଟଣା ମେଡିକାଲ କଲେଜରେ ଗୋଟିଏ ସିଟ୍ ପାଇ ପାଠ ପଢିଲେ। ମୋର ପତ୍ନୀଙ୍କର ଗୋଟିଏ ଅପରେସନ ଏହାଙ୍କ କଟକ Sun Clinicରେ ସୁକୁମାର ମିତ୍ର କରିଥିଲେ।

---



ପ୍ରଫେସର ଡାକ୍ତର ବିମଳ ଚନ୍ଦ୍ର କର

ଆବିର୍ଭାବ-୨୫।୦୪।୧୯୩୩
ତିରୋଧାନ-୦୭।୦୯।୨୦୦୯

ବୁର୍ଲା ମେଡିକାଲ କଲେଜର ପ୍ରିନସିପାଲ ଥିଲେ। ତାଙ୍କର ଆତ୍ମଜୀବନୀ ସେ ସମୟର କଥା କହିବ। ସେ ଭରତ ଚନ୍ଦ୍ର ନାୟକଙ୍କ ଜାମାତା ଓ ପ୍ରଫେସର ଡାକ୍ତର ସତ୍ୟଭାମା ଦେବୀଙ୍କ ସ୍ୱାମୀ। ସେ ଆମ ବରମୁଣ୍ଡା ହାଉସିଂ କଲୋନିରେ ରହୁଥିଲେ।

---



ଇଂ. ଦୈତାରୀ ବେହେରା
ଆବିର୍ଭାବ-୩୧।୦୧।୧୯୨୦
ତିରୋଧାନ-୧୩।୦୧।୧୯୯୫

ସେ ଜଣେ ଡିପ୍ଲୋମା ଇଞ୍ଜିନିଅର ଥିଲେ। ସେ ନିର୍ମାଣ ବିଭାଗରେ କାମ କରି S.D.O ହୋଇ ଅବସର ନେଇଥିଲେ।

---



ପ୍ରଫେସର ଡାକ୍ତର ତେଜେଶ୍ୱର ରାଓ
ଆବିର୍ଭାବ-୦୩।୦୯।୧୯୩୪
ତିରୋଧାନ-୩୧।୦୧।୨୦୧୦

ସେ ଥିଲେ କଟକ ମେଡିକାଲ କଲେଜର ବେଷ୍ଟ ଗ୍ରାଜୁଏଟ। ସେ Director Of Medical Education And Training ପଦରୁ ଅବସର ନେଇଥିଲେ। ୧୯୭୦ ମସିହାରେ ମୋର ପତ୍ନୀଙ୍କ ଅସୁସ୍ଥତା ସମୟରେ ଡାକ୍ତର ବିଭୁତି ତ୍ରିପାଠୀ ଏହାଙ୍କୁ ଏବଂ ଡାକ୍ତର ସନାତନ ରଥଙ୍କୁ ନେଇ ଦେଖିଥିଲେ।

---



ଡାକ୍ତର ଉଦ୍ଧବ ଚରଣ ବେହେରା
ଆବିର୍ଭାବ-୧୯୨୮
ତିରୋଧାନ-୨୮।୦୧।୨୦୧୦

ସେ କଟକରେ କ୍ଲିନିକ କରିଥିବା ବେଳେ ମୁଁ ତାଙ୍କୁ ଚକ୍ଷୁ ଦେଖାଇଛି ଚେକିଂ ପାଇଁ ପ୍ରାଇଭେଟ କ୍ଲିନିକରେ। ୧୯୮୫ ରେ V.S.S ମେଡ଼ିକାଲ କଲେଜରେ ଚକ୍ଷୁ ବିଭାଗର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଥିଲେ। ତାଙ୍କ ୮୨ ବର୍ଷ ବୟସରେ ମୃତ୍ୟୁ ହୋଇଥିଲା।

---



ବୈକୁଣ୍ଠ ବିହାରୀ ଜେନା

ଆବିର୍ଭାବ-୦୧।୦୪।୧୯୩୯

ତିରୋଧାନ-୦୧।୦୪।୨୦୦୯

ତାଙ୍କ ଘର ପଟିଆ। ମୁଁ BDA ରେ କାମ କରୁଥିବା ବେଳେ ସେ ଆମର ଠିକାଦାର ଥିଲେ। ବହୁତ ଭଦ୍ର।



ପ୍ରଫେସର ଡ. କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

ଆବିର୍ଭାବ-

ତିରୋଧାନ-୨୨।୦୪।୨୦୦୦

ସେ ଖଣ୍ଡପଡାର ସଂସ୍କୃତ ପଣ୍ଡିତ ବନମାଳୀ ଆଚାର୍ଯ୍ୟଙ୍କ ସୁପୁତ୍ର। ମୋର ବନ୍ଧୁ ସୋମନାଥ ମିଶ୍ର OSS ଡେପୁଟି ସେକ୍ରେଟେରିଙ୍କ ସମୁଦୀ।



ବାସନ୍ତୀ ଦେବୀ

ଆବିର୍ଭାବ-୨୭।୦୭।୧୯୩୦

ତିରୋଧାନ-୦୯।୦୭।୨୦୧୬

ଅବସର ପ୍ରାପ୍ତ ନିର୍ବାହୀ ଯନ୍ତ୍ରୀ। ଇଞ୍ଜିନିଅର ଗୋକୁଳ କୃଷ୍ଣ ଶତପଥିଙ୍କ ଧର୍ମପତ୍ନୀ। ଗୋକୁଳକୃଷ୍ଣ ସଂକଳନ କରିଛନ୍ତି କିଛି ଧର୍ମାତ୍ମକ ବହି।



ଗନ୍ଧର୍ବ ଶତପଥି

ଆବିର୍ଭାବ-୧୯୧୧

ତିରୋଧାନ-୨୪।୦୧।୨୦୧୧

ରାସ୍ତା ଓ ଗୃହ ବିଭାଗରେ ସେ ସେକସନ ଅଫିସର ଥିଲେ। ୯୦ ବୟସରେ ମୃତ।



ଜେ ଆପା ରାଓ

ଆବିର୍ଭାବ-୧୧।୦୪।୧୯୨୮

ତିରୋଧାନ-୨୭।୦୧।୨୦୧୧

ଢେଙ୍କାନାଳରେ ଥିବା ଆଜ ବେଷ୍ଟର କାରଖାନାରେ ଥିଲେ ଜଣେ

ଭାଗିଦାର। ଡାକ୍ତର ଜେ.କିଶୋରଙ୍କର ପିତା। ସେ ଆମର ଦୂର ସମ୍ପର୍କୀୟ ବନ୍ଧୁବାନ୍ଧବ।



ଶରତ ପୂଜାରୀ
ଆବିର୍ଭାବ-୦୮।୦୮।୧୯୩୪
ତିରୋଧାନ-୧୨।୦୫।୨୦୧୪

ବିଶିଷ୍ଟ ଚଳଚିତ୍ର ଅଭିନେତା ତଥା କଲେଜ ପ୍ରିନସିପାଲ। ତାଙ୍କ ପିତା ସଚିଦାନନ୍ଦ ପୂଜାରୀ ନୟାଗଡ଼ ଗଡଜାତର ସୁପରିଟେଣ୍ଡେଣ୍ଟ ଥିଲେ। ଶରତ ପୂଜାରୀ ନୟାଗଡ଼ରେ ଜନ୍ମ ହୋଇଥିଲେ।



ଇଂ. ସୁବଳ କିଶୋର ମଙ୍ଗଳ
ଆବିର୍ଭାବ-୧୮।୦୩।୧୯୪୭
ତିରୋଧାନ-୦୮।୦୨।୨୦୧୧

ସେ ପାରାଦ୍ୱିପରେ ମେକାନିକାଲ ଇଞ୍ଜିନିଅର ଥିଲେ। ବର୍ତ୍ତମାନ ତାଙ୍କର ପରିବାର ଫକିରମୋହନ ନଗର,ବରମୁଣ୍ଡାରେ ରହୁଛନ୍ତି।



ସୁଶିଳାରାଣୀ ଆଚାର୍ଯ୍ୟ
ଆବିର୍ଭାବ-
ତିରୋଧାନ-୨୪।୧୧।୨୦୧୦

ଡାକ୍ତର ଇଶ୍ୱରୀ ପ୍ରସାଦ ଆଚାର୍ଯ୍ୟଙ୍କ ପତ୍ନୀ। ଇଂ. ନରସିଂହ ମହାପାତ୍ରଙ୍କ କନ୍ୟା। ନରସିଂହ ମହାପାତ୍ରଙ୍କ ପୁଅ ପଦାରବିନ୍ଦ ମହାପାତ୍ର ହେଉଛନ୍ତି ସମାଜ ସମ୍ପାଦକ ରାଧାନାଥ ରଥଙ୍କ ଜୁଆଇଁ। ଇଶ୍ୱରୀ ପ୍ରସାଦ ୧୯୫୭ରେ ନୟାଗଡ଼ରେ ଡାକ୍ତର ଥିଲେ। ସେ ମୋତେ ସ୍ୱାସ୍ଥ୍ୟ ସାର୍ଟିଫିକେଟ ଦେଇଥିଲେ ଇଞ୍ଜିନିଅରିଂ ସ୍କୁଲରେ ଆଡମିସନ ପାଇଁ।



ଇଂ. ପ୍ରହଲ୍ଲାଦ ପଟ୍ଟନାୟକ

ଆର୍ଭିଭାବ-୦୨।୧୨।୧୯୨୬
ତିରୋଧାନ-୧୬।୦୮।୨୦୧୫

ସେ ନିର୍ମାଣ ବିଭାଗର ସର୍ବୋଚ ଯନ୍ତ୍ରୀ ଓ ସେକ୍ରେଟେରି ପଦରୁ ଅବସର ନେଇଥିଲେ। ୧୯୬୦ ରେ ସେ କଟକ ଡିଭିଜନର ନିର୍ବାହୀ ଯନ୍ତ୍ରୀ ଥିଲାବେଳେ ମୁଁ ଇଞ୍ଜିନିଅରିଂ ସ୍କୁଲରୁ ପାସକରି ତାଙ୍କ ପାଖରେ ଟ୍ରେନିଂ ନେଇଥିଲି। ୧୯୮୪ ରେ ରମାବାବୁ ତାଙ୍କୁ କହିବାରୁ ଚାରବାଟିଆ (RSB) Sub DivisionNo-1ରେ ମୋର ନିଯୁକ୍ତି ହୋଇଥିଲା।

---



ପ୍ରଫେସର ଡା. କିରଣ କୁମାର ମିଶ୍ର
ଆର୍ଭିଭାବ-୨୭।୦୯।୧୯୩୮
ତିରୋଧାନ -୧୫।୦୮।୨୦୧୫

ଜନ୍ମ ଶରଣକୁଳ। ପିତା ଶିକ୍ଷକ ଭୁବନେଶ୍ୱର ମିଶ୍ର। ମୁଁ ଶରଣକୁଳ ହାଇସ୍କୁଲରେ ଅଷ୍ଟମରେ ପଢୁଥିଲାବେଳେ ସେ ଏକାଦଶ ଶ୍ରେଣୀରେ ପଢୁଥିଲେ। ୧୯୫୪ରେ ମାଟ୍ରିକ ପାସ କରିଥିଲେ। କଟକ ମେଡିକଲ କଲେଜରେ ଫୋରେନସେନିକ ମେଡ଼ିସିନ ବିଭାଗରେ ପ୍ରଫେସର ଥିଲେ। ବୁର୍ଲା ମେଡିକଲ କଲେଜର ମଧ୍ୟ ଅଧକ୍ଷ ଥିଲେ।

---



ପ୍ରଫେସର ହୃଦାନନ୍ଦ ରାୟ
ଆବିର୍ଭାବ -୧୦।୦୫।୧୯୩୦
ତିରୋଧାନ -୨୭।୦୭।୨୦୧୫

ଓଡିଶାର ଶିକ୍ଷା ଜଗତରେ ସେ ଥିଲେ ଏକ ବର୍ଣ୍ଣାଢ୍ୟ ପ୍ରତିଭା। ପ୍ରଥିତ ଯଥା ଦାର୍ଶନିକ ଯଶସ୍ୱୀ ଅଧ୍ୟାପକ, ବିଶିଷ୍ଟ ଗବେଷକ ବହୁ ଉଚ୍ଚକୋଟିର ଗ୍ରନ୍ଥର ରଚୟିତା, ବାଗ୍ମୀ ପ୍ରବର ଏବଂ ବଳିଷ୍ଠ ସଂଗଠକ। ଏହି ମଣିଷକୁ ଖୋଜିଲେ ଆଉ ମିଳିବେନି।

ସେ ବାରଣାସୀ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ଏମ.ଏ. ପାସ କରିଥିଲେ। ସେ ବହୁ ପୁସ୍ତକରେ ପ୍ରଣେତା। ସାହିତ୍ୟ ସେବା ପାଇଁ ତାଙ୍କୁ ଉତ୍କଳ ସାହିତ୍ୟ ସମାଜ, ଓଡିଶା ସାହିତ୍ୟ ଏକାଡେମୀ ଓ ସାରଳା ସମ୍ମାନ ଆଦି ବହୁ ସମ୍ମାନରେ ସମ୍ମାନିତ କରାଯାଇଅଛି। ମୋ ଦ୍ୱାରା ସଂକଳିତ

"TheThesaurus of Events and dates of Orissa" ଦେଖି ସେ ଓଡିଶା ସାହିତ୍ୟ ଏକାଡେମୀ ସମ୍ମାନ ମୋତେ ସେ କରାଇ ଦେଇଥିଲେ। ୨୦୧୪ ରେ ମୋର ସଂକଳିତ ପୁସ୍ତକ "Places of tourist interest in Odisha, a cultural guide" ଉନ୍ମୋଚନ ସଭାରେ ସଭାପତି ହୋଇଥିଲେ।

---



ଶୁକଦେବ ସାହୁ
ଆବିର୍ଭାବ -୧୯୨୧
ତିରୋଧାନ-୨୯।୦୭।୨୦୧୫

ସ୍ୱାଧୀନତା ସଂଗ୍ରାମୀ ଏବଂ ଆଦିବାସୀ କଲ୍ୟାଣ ବିଭାଗ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ। ତାଙ୍କ ସହିତ ମୋର ବ୍ୟକ୍ତିଗତ ବନ୍ଧୁତା ଥିଲା। ସବୁ ଭଲ କାର୍ଯ୍ୟରେ ସେ ଆଗଭର। ସେ ଆମ କଲୋନିରେ ରହୁଥିଲେ।

---



ଇଂ. ରବୀନ୍ଦ୍ରନାଥ ନାୟକ
ଆବିର୍ଭାବ-
ତିରୋଧାନ -୧୫।୦୭।୨୦୧୫

୭୮ ବର୍ଷ ବୟସରେ ମୃତ୍ୟୁ। ନିର୍ମାଣ ବିଭାଗର ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ଏହାଙ୍କ କଥା ସାହିତ୍ୟିକ Dr ବୈଷ୍ଣବ ଚରଣ ସାମଲ ଉଲ୍ଲେଖ କରିଛନ୍ତି ତାଙ୍କ ବିଷୟରେ ଆତ୍ମଜୀବନୀ "ବଣା ବାଟୋଇର"। ସେ ମୋ ତଳ କ୍ଲାସରେ ପଢୁଥିଲେ କଟକ ଇଞ୍ଜିନିଅରିଂ ସ୍କୁଲରେ।

---



ସୁରେନ୍ଦ୍ର ନାଥ ମହାପାତ୍ର
ଆବିର୍ଭାବ -୧୦।୦୪।୧୯୬୯
ତିରୋଧାନ-୧୫।୧୨।୨୦୧୫

ସେ ଆମ ହାସ୍ୟ କ୍ଲବର ଜଣେ ସଭ୍ୟ ଥିଲେ। ଦୁର୍ଘଟନାରେ

ତାଙ୍କର ମୃତ୍ୟୁ ହେଲା। ସେ ମାଇନିଂ ପରୀକ୍ଷଣାଗାରରେ ଇନ୍ସପେକ୍ଟର ଥିଲେ। ସେ ମୋର ବନ୍ଧୁ ଥିଲେ।

---



ସତ୍ୟଭାମା ଜେନା
ଗ୍ରାମ ଭାଲିଆଡି (ଶରଣକୁଳ ଥାନା )
ସ୍ୱାମୀ ଡାକ୍ତର ରାହାସ ଜେନା
ତିରୋଧାନ-୨୩।୧୨।୨୦୧୪

ସତ୍ୟଭାମା ଡାକ୍ତର ✓ ରାହାସ ଜେନାଙ୍କ ଧର୍ମପତ୍ନୀ। ରାହାସ ୧୯୫୫ରେ ଶରଣକୁଳ ନାରାୟଣ ହାଇସ୍କୁଲରୁ ମାଟ୍ରିକ ପାସ କରି ଭେଟେନାରି ସାଇନସରେ ଡିପ୍ଲୋମା କରିଥିଲେ। ରାହାସ ମୋ ✓ ଭାଇ ଦଣ୍ଡପାଣିଙ୍କ ଅନ୍ତରଙ୍ଗ ବନ୍ଧୁ ଥିଲେ। ଡାକ୍ତର ରାହାସଙ୍କ ଘର ଭାଲିଆଡି ଗ୍ରାମରେ, ଆମ ଗାଁ ପାଖରେ।

---



ଡି. କାମେଶ୍ୱର ରାଓ ପଟ୍ଟନାୟକ
ଆବିର୍ଭାବ -୧୯୦୬
ତିରୋଧାନ-୧୯୮୫

ଚିଫ ଇଞ୍ଜିନିଅର (R+B)ଙ୍କ P.A. (nonTechnical)ଥିଲେ ବିଂଶ ଶତାବ୍ଦୀରଷଷ୍ଠ ଦଶକରେ। ପରେ ରାଉରକେଲା ଇଞ୍ଜିନିଅରିଂ କଲେଜକୁ ଡେପୁଟି ରେଜିଷ୍ଟର ହୋଇଗଲେ। ଅମ୍ବିକ ପ୍ରସାଦ ନନ୍ଦ,AsttoCE, ମୋର C.E ଅଫିସକୁମୋ ବଦଳି ପାଇଂ. କହିବାରୁ ସେ ଗୋଟିଏ ଫାଇଲ ପ୍ରସେସ କରିଥିଲେ। ଯାହା ଫଳରେ ମୁଁ AMIE ପଢିବା ନିମିତ୍ତ ଡିଭିଜନ ଅଫିସରୁ ବଦଳି ହୋଇ C.EN.H ଅଫିସକୁ ଆସି ପାରିଲି।

---



ଜୟ ସିଂହ ପଟ୍ଟନାୟକ
ଆବିର୍ଭାବ -୦୫।୦୪।୧୯୩୫
ତିରୋଧାନ-୩୦।୧୧।୨୦୧୪

ସେ ବୟନଶିଳ୍ପ ବିଭାଗର ପଦସ୍ଥ ଅଫିସର। ଦଧିମାଛଗାଡିଆର ଜଣାଶୁଣା ଲେଖକ ଏବଂ ମଧୁପ୍ରେମୀ ସୁରସିଂହ ପଟ୍ଟନାୟକଙ୍କ ସାନ ଭାଇ। ସୁରସିଂହ କହିବାରୁ ସେ ମୋଠୁ କିଛି ବହି କିଣି ନେଇଥିଲେ। ଜୟସିଂହଙ୍କ

ପିତା ଦିବ୍ୟସିଂହ ପଟ୍ଟନାୟକ ଖୋରଧା ହାଇସ୍କୁଲ ହେଡ଼ମାଷ୍ଟର ଥିଲେ।



ଇଂ. ସତ୍ୟନାରାୟଣ ସେନାପତି
ଆବିର୍ଭାବ-୧୯୪୨
ତିରୋଧାନ-୧୫।୦୯।୨୦୧୫

ସେ ଜନସ୍ୱାସ୍ଥ୍ୟ (ଇଞ୍ଜିନିଅର) ବିଭାଗରେ ଅବସର ପ୍ରାପ୍ତ ସହକାରୀ ଯନ୍ତ୍ରୀ। ସେ I.R.C Villageରେ ସ୍ୱପ୍ନେଶ୍ୱର ମନ୍ଦିର ପ୍ରାଙ୍ଗଣରେ ଏକ ବିଷ୍ଣୁ ମନ୍ଦିର ପ୍ରତିଷ୍ଠା କରିଛନ୍ତି। ସେ କଟକ ଇଞ୍ଜିନିଅରିଂ ସ୍କୁଲରୁ ୧୯୬୩ରେ ପାସ କରି ଥିଲେ। ଆମ୍ଭେ ସବୁଦିନ ପ୍ରାତଃଭ୍ରମଣ କାଳରେ ମିଶୁ।



ଇଂ. ପଦ୍ମଚରଣ ନାୟକ
(୧୯୪୩-୨୦୧୨)

ମୁଁ ୧୯୮୮ରୁ ୧୯୯୨ରେ ନୟାଗଡ PWD SDO ଥିଲା ବେଳେ ସେ ଖୋର୍ଦ୍ଧାରେ store sectionରେ J.E ଥିଲେ। ବହୁତ ଭଦ୍ର।



ସତ୍ୟବାଦୀ ଦୋରା
ଆବିର୍ଭାବ-୨୧।୦୮।୧୯୪୨
ତିରୋଧାନ-୩୦।୦୧।୨୦୧୪
ଗ୍ରାମ:ବଡ଼ପୁଟ, ଥାନା: ଶରଣକୁଳ

Co-operative ବ୍ୟାଙ୍କ ମେନେଜର ଥିଲେ। ଅନ୍ୟାୟ ବିରୁଦ୍ଧରେ ସେ ସଂଗ୍ରାମ ଜାରି ରଖିଥିଲେ। ସେ ମୋର ସମ୍ପର୍କୀୟ ବନ୍ଧୁବାନ୍ଧବ। ଅର୍ଥନୀତିରେ M.A ପାସ କରିଥିଲେ। ସତ୍ୟବାଦୀଙ୍କ ବାପା ଗାଁର ନାହାକ (ସରକାରଙ୍କର) ଥିଲେ।



ଆଡଭୋକେଟ ସୁବାସ ଲାଲ
ଆବିର୍ଭାବ:୧୯୪୫
ତିରୋଧାନ: ନଭେମ୍ବର ୨୦୧୫

ସେ ବରିଷ୍ଠ ଆଡଭୋକେଟ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଜୁନିଅର ଥିଲେ ୧୯୭୪ରୁ ୧୯୭୫ ମସିହାରେ। ଆମ୍ଭେ ସେତେବେଳେ ଜୁନିଅର ଇଞ୍ଜିନିଅର କ୍ୟାଡରରେ ସିନିଅରଟି ପାଇଁ. ଗୋଟିଏ କେସ ଦେଇଥିଲୁ ବୀରେନ୍ଦ୍ର ବାବୁଙ୍କୁ। ସୁବାସ ଲାଲଙ୍କ ଭଳି ଅନ୍ୟ ଜୁନିଅରମାନେ ହେଲେ କେଦାରନାଥ ଜେନା ଏବଂ ମନୋରଞ୍ଜନ ପଣ୍ଡା।

---



ପ୍ରଧାନ ଶିକ୍ଷକ ଉପେନ୍ଦ୍ରନାଥ ଶତପଥୀ

ଆବିର୍ଭାବ-୩୧।୦୧।୧୯୦୭

ତିରୋଧାନ-୧୭।୧୦।୧୯୮୯

ଜନ୍ମ ସ୍ଥାନ କଣ୍ଟିଲୋ। ସେ ଶରଣକୁଳ ନାରାୟଣ ହାଇ ସ୍କୁଲରେ ହେଡମାଷ୍ଟର ଥିଲେ, ବିଂଶ ଶତାବ୍ଦୀର ୫ମ ଦଶକରେ। ମୋର ବନ୍ଧୁ ଇଂ. ଦୀନବନ୍ଧୁ ମିଶ୍ରଙ୍କ ଶ୍ୱଶୁର। ୧୯୪୯ ରେ ମୁଁ ୪ର୍ଥ ଶ୍ରେଣୀରେ ନାମ ଲେଖେଇବା ପାଇଁ. ଶରଣକୁଳ ସ୍କୁଲକୁ ଯାଇଥିଲି। ସେ ବର୍ଷ ଏକ ନିର୍ବାଚନ ପରୀକ୍ଷା ହେବାରୁ ମୁଁ ବଛା ହୋଇ ପାରିଲିନି। ଆମ ଗାଁ ରାଜକିଶୋର ବଛା ହେଲା।

---



ଇଂ. କିଶୋର ଚନ୍ଦ୍ର ମିଶ୍ର

ଆବିର୍ଭାବ-୦୧।୦୯।୧୯୩୯

ତିରୋଧାନ-୦୩।୦୨।୨୦୧୩

ଜଳ ସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ। କିଶୋର ଆଠଗଡରେ ଜନ୍ମ। ସେ ବୁର୍ଲା ଇଞ୍ଜିନିଅରିଂ କଲେଜରୁ ୧୯୬୪ରେ ପାସ କରିଥିଲେ। ୧୯୬୪ରେ ମୁଁ C.E.N.H ଅଫିସରେ estimator ଥିଲାବେଳେ ସେ ଆମ ଅଫିସରେ ଜୁନିଅର ଇଞ୍ଜିନିଅର ଥିଲେ।

---



ନିରଞ୍ଜନ ଶତପଥୀ

ଆବିର୍ଭାବ

ତିରୋଧାନ

ପ୍ରଖ୍ୟାତ ଥିଏଟର ଏବଂ ସିନେମା କଳାକାର। ଜନ୍ମିତ ସ୍ଥାନ ରସଲକୁଣ୍ଡା (ବର୍ତ୍ତମାନ ଭଞ୍ଜନଗର ନାମରେ ନାମିତ)। ତାଙ୍କ ପ୍ରଣିତ ଆତ୍ମଜୀବନୀ

"ପୂର୍ଣ୍ଣିରୁ ପୂର୍ଣ୍ଣ ଫେଡିଲା ପରେ" ଏକ ଉତ୍କୃଷ୍ଟ ପୁସ୍ତକ। ଓଡିଶାର ନାଟ୍ୟ ଜଗତ ଇତିହାସ ସୂଚାଇବ। ସେ ଜନତା ଥିଏଟରରେ ଅଭିନୟ କରୁଥିଲା ବେଳେ ମୁଁ ତାଙ୍କର ଅନେକ ଡ୍ରାମା ଦେଖିଛି।

---



ଇଂ. ରମେଶ ଚନ୍ଦ୍ର ମହାପାତ୍ର
ଆବିର୍ଭାବ-୩୦।୦୪।୧୯୪୩
ତିରୋଧାନ-୦୮।୦୩।୨୦୧୩

ଜାତୀୟ ରାଜପଥ ଇଞ୍ଜିନିଅରିଂ ସଂସ୍ଥାର ମୁଖ୍ୟ ଯନ୍ତ୍ରୀ ଥିଲେ। ବୁର୍ଲା ଇଞ୍ଜିନିଅରିଂ କଲେଜରୁ ୧୯୬୫ ରେ ପାସ କରିଥିଲେ।

---



ସୀତାରାମ ହଜାରି
ଆବିର୍ଭାବ-୦୬।୦୬।୧୯୪୯
ତିରୋଧାନ-୨୬।୦୩।୨୦୧୨

ସିତାରାମଙ୍କ ଜନ୍ମ ଗୋଡିପଡ଼ା (ଶରଣକୁଳ ଥାନା) ଗ୍ରାମରେ। ସେ କେଶରପୁର ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିଲେ।

---



ନରସିଂହ ପଟ୍ଟନାୟକ
ଆବିର୍ଭାବ-୦୨।୦୪।୧୯୨୧
ତିରୋଧାନ-୦୫।୦୩।୨୦୦୧

ଜନ୍ମ ନନ୍ଦିଘୋର ଗ୍ରାମରେ (ଶରଣକୁଳ ଥାନା)। ସେ ଆଡଭୋକେଟ ଥିଲେ। ନୟାଗଡ କଲେଜର ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଜଣେ।

---



ବିମ୍ବାଧର ମିଶ୍ର
(୧୯୩୬-୨୦୧୩)

ନୟାଗଡ ଶରଣକୁଳ ଥାନା ପଦ୍ମାଦେଈପୁର ଗ୍ରାମରେ ଜନ୍ମ। ସେ ଶରଣକୁଳ ହାଇସ୍କୁଲରୁ ୧୯୫୫ରେ ମାଟ୍ରିକ ପାସ କରିଥିଲେ। ଓଡିଶା

ସେକ୍ରେଟେରିଏଟରେ କାମ କରୁଥିଲେ। ତାଙ୍କର ବଡଭାଇ ଚକ୍ରଧର ମିଶ୍ର ଆମର ଶିକ୍ଷକ ଥିଲେ ହାଇସ୍କୁଲରେ।



ଇଂ. ଲକ୍ଷ୍ମଣ ରଥ
ଆବିର୍ଭାବ-୨୦।୦୬।୧୯୪୨
ତିରୋଧାନ-୦୫।୦୬।୨୦୧୬

ଘର ବଡମ୍ବା। ସେ ପି:ଏଚ (ଜଳ) ବିଭାଗରେ ଜୁନିଅର ଇଞ୍ଜିନିଅର ଥିଲେ। ଭୂତତ୍ତ୍ୱବିଦ ରଘୁନାଥ ରଥଙ୍କ ସାନଭାଇ। ସେ ଜଣେ କଳାକାର ଥିଲେ।



ଇଂ. ଗଣେଶ୍ୱର ନନ୍ଦ
ଆବିର୍ଭାବ
ତିରୋଧାନ

ସେ କଟକ ଇଞ୍ଜିନିଅରିଂ କଲେଜରେ ମୋର ସିନିଅର ଲେକଚରର ଥିଲେ। ସେ ଗୋଟେ ସର୍ଭେ ବହି ଲେଖିଥିଲେ। ଆମେ ତାକୁ ପଢୁଥିଲୁ। ମୋର ସାଙ୍ଗ ପୂର୍ଣ୍ଣଚନ୍ଦ୍ର ରଥ ତାଙ୍କର ଜଣେ ଜାମାତା ଅଟନ୍ତି।



ଇଂ. ଦୀନବନ୍ଧୁ ମିଶ୍ର
ଆବିର୍ଭାବ-୧୯୪୦
ତିରୋଧାନ-୨୩।୦୪।୨୦୦୪

ଜନ୍ମ ରଣପୁରଗଡ଼ରେ। ସେ ବି.ଡି.ଏ ର ଗୋଡାଗୋପୀନାଥ ପ୍ରସାଦ ଘର ପ୍ରକଳ୍ପରେ ମୋର ସହକର୍ମୀ ଥିଲେ। କଣ୍ଟିଲୋର ଖ୍ୟାତନାମା ହେଡମାଷ୍ଟର ଉପେନ୍ଦ୍ର ଶତପଥିଙ୍କ ଜାମାତା। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ।



କେ. ରାଘବନ
ତିରୋଧାନ-୧୯୯୨

ଭୁବନେଶ୍ୱରରେ ଯେଉଁ ସବୁ ସାଉଥ ଇଣ୍ଡିଆନ୍ ହୋଟେଲ ଅଛି ତହିଁର ମାଲିକ ଏହାଙ୍କ ପରିବାର।

ଯଥା:- ରାଜଭବନ ପାଖରେ ଭେନସ, ବାପୁଜୀନଗର ଭେନସ ଇନ, ଖାରବେଳ ନଗର ଥିବା ପ୍ରିୟା ଇତ୍ୟାଦି। ସେ ପ୍ରଥମେ A.G କୋଲୋନିରେ ଗୋଟିଏ ଛୋଟ ହୋଟେଲ ଶିଳ୍ପ ଆରମ୍ଭ କରିଥିଲେ। ଆମେ ୧୯୬୭ରେ ସେଠି ଖାଉଥିଲୁ। ଖୁବ କମ ବୟସରେ ମୃତ୍ୟୁ ହୋଇଥିଲା।

---



ଡାକ୍ତର ଶଶିଶେଖର
(୧୯୩୪-୨୦୧୭)

ଡାକ୍ତର ଶଶୀଶେଖରଙ୍କ ଜନ୍ମ ନୟାଗଡ ଜିଲ୍ଲା ଶରଣକୁଳ। ଭୁବନେଶ୍ୱରସ୍ଥ କର କ୍ଲିନିକର ପ୍ରତିଷ୍ଠାତା। ମୋର ମାଟ୍ରିକ କ୍ଲାସମେଟ ଶାନ୍ତି କୁମାରୀଙ୍କ ବଡଭାଇ।

---



ଅନିମୁଲ ଇସଲାମ
ଆବିର୍ଭାବ-୦୫।୦୮।୧୯୦୦
ତିରୋଧାନ-୧୦।୦୮।୧୯୮୫

କୋହିନୁର ପାଞ୍ଜିର ଜନକ। ୧୯୩୫ରେ ପାଞ୍ଜି ପ୍ରଥମେ ପାଇଂ. ବାହାରିଲା। ପ୍ରେସ ପ୍ରତିଷ୍ଠା ହେଲା ୧୯୩୦ ରେ।

---



ଜାନକୀ ବଲ୍ଲଭ ପଟ୍ଟନାୟକ
ଆବିର୍ଭାବ-୦୩।୦୧।୧୯୨୭
ତିରୋଧାନ-୨୭।୦୪।୨୦୧୫

ପ୍ରାକ୍ତନ ମୁଖ୍ୟମନ୍ତ୍ରୀ, ରାଜ୍ୟପାଳ, ଲୋକସଭା ସଦସ୍ୟ ଓ ସାହିତ୍ୟିକ। ସେ ୧୯୯୭ରେ କେନ୍ଦ୍ର ଦରମା ଓଡିଶାରେ ଲାଗୁ କରିବାରୁ ପେନସନ ବହୁତ ବଢିଗଲା। ୧୯୮୦ରେ ଗ୍ରାମ୍ୟ ଇଞ୍ଜିନିଅରିଂ ସଂସ୍ଥାକୁ ଭାଙ୍ଗି ନିର୍ମାଣ ଓ ଜଳ ସେଚନ ବିଭାଗରେ ମିଶାଇ ଥିଲେ। ମୋର ନିର୍ବାହୀ ଯନ୍ତ୍ରୀ ହିସାବରେ ନିଯୁକ୍ତି ତାଙ୍କ ଦସ୍ତଖତ ରେ ହୋଇଥିଲା।

---



ଲକ୍ଷ୍ମଣ ମଲ୍ଲିକ

ଆବିର୍ଭାବ-୧୨।୧୧।୧୯୨୪
ତିରୋଧାନ-୧୯।୧୦।୨୦୧୪

ସ୍ୱାଧୀନତା ସଂଗ୍ରାମୀ ଓ ରାଜ୍ୟସରକାରଙ୍କ ପୂର୍ତ୍ତ ମନ୍ତ୍ରୀ ଥିଲେ। ମୋ ପାଇଂ. ୧୯୭୮ ରେ ଲକ୍ଷ୍ମଣ ବାବୁ (ପୂର୍ବତନ ମନ୍ତ୍ରୀ) ସେଣ୍ଟ୍ରାଲ ସର୍କଲ ଅଧିକ୍ଷଣ ଯନ୍ତ୍ରୀଙ୍କୁ କହିବାରୁ ମୋର ନିଯୁକ୍ତି ହୋଇଥିଲା ଜଗତସିଂପୁର (R&B) ସେକସନରେ।

---



ସଙ୍ଗୀତଜ୍ଞା ଭୁବନେଶ୍ୱରୀ ମିଶ୍ର
ଆବିର୍ଭାବ-୨୫।୦୧।୧୯୫୦
ତିରୋଧାନ-୧୯।୦୨।୨୦୧୬

ପିତା ନାରାୟଣ ମିଶ୍ର P.W.D Divisional Accountant ଥିଲେ। ଭୁବନେଶ୍ୱର ଡିଭିଜନରେ କୋକିଳ କଣ୍ଠୀ ଭୁବନେଶ୍ୱରୀଙ୍କ ସ୍ୱାମୀ ଜଣେ ଡାକ୍ତର। ଏହି ଡାକ୍ତରଙ୍କ ବଡ ଭାଇ ଉମା ମିଶ୍ର ମୋର ଇଞ୍ଜିନିଅରିଂ ସ୍କୁଲ ସହପାଠୀ।

---



ବାଳକୃଷ୍ଣ ପଟ୍ଟନାୟକ
ଆବିର୍ଭାବ-୧୮।୧୨।୧୯୪୦
ତିରୋଧାନ-୦୨।୦୨।୧୯୧୬

ଜନ୍ମିତ ଗ୍ରାମ ଆମ ଗାଁ ପାଖ ଭାଲିଆଡି (ଶରଣକୁଳ ଥାନା) ସେ ନୟାଗଡ଼ D.P.I ଅଫିସରେ କାମ କରୁଥିଲେ।

---



ସଂଯୁକ୍ତା ବଡୁ
ଆବିର୍ଭାବ-୦୬।୦୭।୧୯୪୮
ତିରୋଧାନ-୧୩।୦୧।୨୦୧୫

ସ୍ୱାମୀ କୃଷ୍ଣଚନ୍ଦ୍ର ବଡୁ IAS। ମୁଁ ଫୁଲବାଣୀରେ ନିର୍ବାହୀ ଯନ୍ତ୍ରୀ ଥିଲାବେଳେ କୃଷ୍ଣଚନ୍ଦ୍ର ବଉଦର Collector ଥିଲେ।

---



ବଟକୃଷ୍ଣ ବେହେରା
ଆବିର୍ଭାବ-୧୬।୦୮।୧୯୪୫
ତିରୋଧାନ-୧୯।୦୧।୨୦୧୧

ବରମୁଣ୍ଡା ହାଉସିଂବୋର୍ଡ କଲୋନିରେ ରହୁଥିଲେ। ମୋର ସାଙ୍ଗ ଇଂ. ହୃଷିକେଶ ମୁଦୁଲିଙ୍କ ଶଢୁ।



ରୁଦ୍ରମାଧବ ରାୟ
ଆବିର୍ଭାବ-୨୩।୧୧।୧୯୩୭
ତିରୋଧାନ-୩୧।୦୫।୨୦୧୬

ଜନ୍ମ ଦଶପଲ୍ଲା ମଧ୍ୟ ଖଣ୍ଡ ଗ୍ରାମରେ ରାଜ ବିରାଦର ପରିବାରରେ। M.L.A ହୋଇଥିଲେ ୧୯୯୦-୯୫, ୧୯୯୫-୨୦୦୦, ୨୦୦୦-୦୪ ଏବଂ ଫୁଲବାଣିରୁ M.P. ହୋଇଥିଲେ ୨୦୦୯। ମୁଁ ନୟାଗଡ଼ରେ PWD SDO ଥିଲାବେଳେ ଚିହ୍ନା ପରିଚୟ ଥିଲା।



ଗୌରାଙ୍ଗ ପ୍ରଧାନ
ଆବିର୍ଭାବ-୧୯୩୯
ତିରୋଧାନ-୨୪।୦୭।୨୦୧୫

ଜନ୍ମଗ୍ରାମ ଅସୁରିଡିପା, ଶରଣକୁଳ। ଗୌରାଙ୍ଗ ମୋର ୪ର୍ଥ ଶ୍ରେଣୀରୁ କ୍ଲାସମେଟ। ପରେ ମାଟ୍ରିକ ପାସ କଲା। ସେ କଟକ ଜିଲ୍ଲାପାଳଙ୍କ ଆଫିସରେ ସହକାରୀ ଥିଲା। ପରେ ଚାକିରି ଛାଡି ବିଜୁବାବୁଙ୍କ ସହ ମିଶି ୧୯୭୦ରେ କଂଗ୍ରେସ ପାର୍ଟି ତରଫରୁ ରଣପୁର ନିର୍ବାଚନ ମଣ୍ଡଳୀରେ M.L.A ପାଇଂ. ଠିଆ ହେଲା। ଅବଶ୍ୟ ଜିତି ପାରିଲାନି। ତା' ପରେ ସେ ସାହିତ୍ୟ ସଂଗଠନ ଇତ୍ୟାଦିରେ ମନ ଦେଲା। ସେ ମୋର ଉତ୍ତମ ବନ୍ଧୁ। ମୋର ସବୁ ଝିଅ ବାହାଘରମାନଙ୍କରେ ଯୋଗ ଦେଇଛି।



ଇଂ. M.L.Das
ଆବିର୍ଭାବ-୧୯।୦୨।୧୯୨୬

ତିରୋଧାନ-୧୮।୧୨।୨୦୦୧

ସେ ଜଳସେଚନ ବିଭାଗର ମୁଖ୍ୟଯନ୍ତ୍ରୀ ଥିଲେ। ସେ ଆମର ବନ୍ଧୁ ବାନ୍ଧବ ହେବେ। ଏହାଙ୍କ ବଡଭାଇ ମୁଁ B.D.Aରେ ଥିଲାବେଳେ (୧୯୯୩) ଡିଭିଜନାଲ ଆକାଉଣ୍ଟାଣ୍ଟ ଥିଲେ।

---



ଇଂ. ଭବତୋଷ ସିକଦାର

ଆବିର୍ଭାବ-୧୬।୦୯।୧୯୩୯

ତିରୋଧାନ-୨୫।୧୧।୧୯୯୮

ବୁର୍ଲା ଇଞ୍ଜିନିଅରିଂ କଲେଜ ୧୯୬୨ ବ୍ୟାଚ। ସେ ଖୋରଧା N.H. S.D.O ଥିଲେ ୧୯୭୫ ମସିହାରେ। S.E ପଦକୁ ପ୍ରମୋସନ ପାଇ ଅବସର ନେଲେ। ସେ ଥିଲେ ରଣଜିତ ଟ୍ରଫି ଖେଳାଳୀ (କ୍ରିକେଟର)। କଟକ ଇଞ୍ଜିନିଅରିଂ ସ୍କୁଲରେ ୧୯୬୮ ରେ ଲେକଚରର ଥିଲେ।

---



ପ୍ରଧାନ ଶିକ୍ଷକ ହଳଧର ବିଶ୍ୱାଳ

ଆବିର୍ଭାବ-୧୯୨୮

ତିରୋଧାନ-୧୯୯୨

ଜନ୍ମ ନରସିଂହପୁର। ମୋର ସେ ଶରଣକୁଳ ହାଇସ୍କୁଲରେ ଶିକ୍ଷକ ଥିଲେ। ସେ ଆମକୁ ଇଂରାଜୀ ଏବଂ ଅଙ୍କ ଅପସନାଲ ପଢାଉଥିଲେ। କଟକ ସେକଣ୍ଡାରି ବୋର୍ଡ ହାଇସ୍କୁଲରୁ ହେଡମାଷ୍ଟର ହୋଇ ଅବସର ନେଇଥିଲେ। ସେ ଥିଲେ ମୋର ପ୍ରିୟ ଶିକ୍ଷକ।

---



ଇଂ. ନୀଳକଣ୍ଠ ମିଶ୍ର

ଆବିର୍ଭାବ

ତିରୋଧାନ

ନୀଳକଣ୍ଠ ମିଶ୍ର ଡିପ୍ଲୋମା ଇଞ୍ଜିନିଅର ଥାଇ ନିଜର ପ୍ରତିଭା ବଳରେ ପୂର୍ତ୍ତବିଭାଗରେ S.E.

ହୋଇଥିଲେ। ୧୯୬୨ ରେ ସେ କଟକର PWD ଡାକ ବଙ୍ଗଳା ତାଙ୍କ ସମୟରେ ନିର୍ମିତ ହୋଇଥିଲା।

---



ମଦନ ମୋହନ ନନ୍ଦ, IAS
ଆବିର୍ଭାବ-୦୨।୦୨।୧୯୩୮
ତିରୋଧାନ-୨୦।୧୧।୨୦୧୧

ଜନ୍ମ ଗୋଡିପଡା (ଶରଣକୁଳଥାନା)। ସେ ଆମ ଗାଁ ପାଖର। ସେ ସେକ୍ରେଟେରିଏଟରେ ଜଏଣ୍ଟ ସେକ୍ରେଟେରୀ ପଦରୁ ଅବସର ନେଲେ। କଜଳାଇପଲ୍ଲୀ ହାଇସ୍କୁଲରୁ ୧୯୫୬ ରେ ମାଟ୍ରିକ ପାସ କରିଥିଲେ। ତାଙ୍କ ବଡ ଭାଇ ପର୍ଶୁରାମ ନନ୍ଦ ଶିକ୍ଷକ ଥିଲେ। ବର୍ତ୍ତମାନର ଚିଫ ସେକ୍ରେଟେରୀ ସୁରେଶ ଚନ୍ଦ୍ର ମହାପାତ୍ର ତାଙ୍କର ଜାମାତା। ପୂର୍ବତନ ମନ୍ତ୍ରୀ ରାମାକାନ୍ତ ମିଶ୍ର ତାଙ୍କର ଭଣଜା ଅଟନ୍ତି। ମୋର ତାଙ୍କ ସଙ୍ଗେ ଭଲ ଚିହ୍ନା ପରିଚୟ।

---



ରଞ୍ଜିତା ପାତ୍ର
ଆବିର୍ଭାବ-୦୯।୧୨।୧୯୬୦
ତିରୋଧାନ-୦୬।୧୨।୨୦୧୧

ଫୁଲବାଣୀ ଦିବ୍ୟଜୀବନ ସଂଘର ସ୍ଥାୟୀ ସଦସ୍ୟା। ଜଣାଶୁଣା ଠିକାଦାର ତଥା ଫୁଲବାଣି ଦିବ୍ୟଜୀବନ ସଂଘର ମୁଖ୍ୟ ବିପ୍ରଚରଣ ପାତ୍ରଙ୍କ ସହ ଧର୍ମିଣୀ। ତାଙ୍କୁ ଅନ୍ନପୂର୍ଣ୍ଣା ମାତାଜୀ ବୋଲି ଦିବ୍ୟଜୀବନ ସଂଘରେ କହୁଥିଲେ। ମୁଁ ଫୁଲବାଣୀରେ ଥିବାବେଳେ ବିପ୍ରବାବୁଙ୍କ ସାଙ୍ଗରେ ଦେଖା ହୁଏ।

---



ଇଣ୍ଟି ଭଗବାନ ଦୋରା
ଆବିର୍ଭାବ-୧୧।୦୪।୧୯୨୪
ତିରୋଧାନ-୧୦।୦୧।୨୦୧୧

ଜନ୍ମ ଖୋରଧା ଟାଉନ। ସେ ରାଜ୍ୟ ସରକାରଙ୍କ ଫରେଷ୍ଟ ବିଭାଗରେ ହେଡ଼ କ୍ଲର୍କ ପଦରୁ ଅବସର ନେଇଥିଲେ।

ମୋର ଦାଦା ଦୁର୍ଯୋଧନ ଦୋରାଙ୍କ ଶ୍ୟାଳକ ହେବେ। କେଶ ପାନିଆର ଆଡଭୋକେଟ (ହାଇକୋର୍ଟରେ ପ୍ରାକ୍ଟିସ କରୁଥିବା) ଅକ୍ଷୟ କୁମାର ଦୋରାଙ୍କ ଶଶୁର। ଆମର ବନ୍ଧୁ ବାନ୍ଧବ ହେବେ।

---



ଇଂ. ପୁରୁଷୋତ୍ତମ ମଲ୍ଲିକ
ଆବିର୍ଭାବ-୧୪।୦୪।୧୯୩୮
ତିରୋଧାନ-୧୪।୧୨।୨୦୧୧

ଜନସ୍ୱାସ୍ଥ୍ୟ ଇଞ୍ଜିନିଅରିଂ ବିଭାଗରେ S.E. ପଦରୁ ଅବସର ନେଲେ। ଇଞ୍ଜିନିଅରିଂ ଆସୋସିଏସନର ଜଣେ ସକ୍ରିୟ ସଦସ୍ୟ ଥିଲେ।

---



ପ୍ରଫେସର ଡକ୍ଟର ଶରତ ଚନ୍ଦ୍ର ମିଶ୍ର
ଆବିର୍ଭାବ-୨୯।୦୬।୧୯୪୩
ତିରୋଧାନ-୦୨।୦୧।୨୦୧୨

ଭୁବନେଶ୍ୱରସ୍ଥ କୃଷି ମହାବିଦ୍ୟାଳୟରେ ପ୍ରଫେସର ଥିଲେ। ନୟାପଲ୍ଲୀର Age care ସଂସ୍ଥାର ସଦସ୍ୟ ଥିଲେ। ସେଠି ଚିହ୍ନା ପରିଚୟ।

---



ଇଂ. ନିମାଇ ଚରଣ ପାଣି
ଆବିର୍ଭାବ-୨୫।୧୦।୧୯୨୪
ତିରୋଧାନ-୦୬।୦୪।୨୦୧୨

ସେ ବାଙ୍ଗାଲୋର କଲେଜରୁ Eng. ପାସ କରିଥିଲେ। ସେ ପୂର୍ତ୍ତ ବିଭାଗରେ ଚିଫ ଇଞ୍ଜିନିଅର ପଦରେ କାମ କରି ଅବସର ନେଇଥିଲେ। ଅବସର ପରେ ଗୋଟିଏ ପ୍ରେସ ସ୍ଥାପନ କରି ବହୁତ ବହି ଏବଂ ଅଫିସ ଦରକାରୀ କାଗଜ ଛପାଇଥିଲେ। ମୋର ପ୍ରଥମ ସଂକଳନ "Thesaurus of events and dates of Orissa" 2003 ରେ ସେ ଛପା ଯାଇଥିଲା ଏହି ପ୍ରେସରେ। ସେ କୋଣାର୍କ ଓ ପୁରୀ ମନ୍ଦିର ଉପରେ ଏକ ଗବେଷଣା ମୂଳକ ତଥ୍ୟ ପ୍ରକାଶ କରିଅଛନ୍ତି।

---



ଇଂ. ଯୋଗେନ୍ଦ୍ର ନାଥ ମହାରଣା
ଆବିର୍ଭାବ-୦୫।୦୫।୧୯୩୯
ତିରୋଧାନ-୧୦।୦୫।୨୦୧୧

ସେ ନିର୍ମାଣ ବିଭାଗରେ କାମ କରି ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଲେ। ମୋର ଚିହ୍ନା ପରିଚୟ ଥିଲା।



ଭୀମସେନ ସୁବୁଦ୍ଧି
ଆବିର୍ଭାବ-୧୯୩୨
ତିରୋଧାନ-୨୦୦୦

ତାଙ୍କ ଘର ନୟାଗଡ଼ର କୁରାଳ ଗ୍ରାମରେ। ସେ ଭୁବନେଶ୍ୱରରେ ଠିକାଦାରୀ କରୁଥିଲେ। ୧୯୭୫ରେ ମୁଁ N.H Division ଭୁବନେଶ୍ୱରରେ କାମ କଲାବେଳେ ସେ ଠିକା କାମ ନେଇଥିଲେ।



ଶୋଭା ବିଶ୍ୱାଳ
ଆବିର୍ଭାବ-୦୫।୦୫।୧୯୪୮
ତିରୋଧାନ-୨୬।୦୫।୨୦୧୨

ସେ ପୂର୍ତ୍ତ ବିଭାଗର ମୁଖ୍ୟଯନ୍ତ୍ରୀ କୁଳମଣି ବିଶ୍ୱାଳଙ୍କ ଧର୍ମପତ୍ନୀ। କୁଳମଣି ବାବୁ ମୋର S.D.O ଥିଲେ, ମୁଁ N.H. ରେ J.E ଥିଲାବେଳେ ୧୯୭୫ ରେ। ବିଏ ବିଏଡ୍ ଶୋଭା ପାସ୍ କରିଥିଲେ। ମାତ୍ର ଚାକିରି କରି ନାହାନ୍ତି। ଅତ୍ୟନ୍ତ ସ୍ନେହଶୀଳା।



ନିମାଇ ଚରଣ ବେହେରା
ଆବିର୍ଭାବ-୦୯।୦୮।୧୯୩୮
ତିରୋଧାନ-୧୪।୦୮।୨୦୧୧

ନିମାଇ ବାବୁ ଚିଫ ଇଞ୍ଜିନିଅର (R&B) ଅଫିସରେ ଏଷ୍ଟାବ୍ଲିସମେଣ୍ଟ ଅଫିସର ହୋଇ ଅବସର ନେଲେ। ସେ ଭାରି ଭଦ୍ର।



ଇଂ. ଭାଗବତ ପାତ୍ର
ଆବିର୍ଭାବ-୨୫।୦୨।୧୯୩୮
ତିରୋଧାନ-୦୩।୦୬।୨୦୧୨

ପୂର୍ତ୍ତ ବିଭାଗରେ ମୋର ମୁଖ୍ୟଯନ୍ତ୍ରୀ ଥିଲେ। ୧୯୯୫-୯୬ ମସିହାରେ ମୁଁ ଫୁଲବାଣିରେ ଥିଲାବେଳେ ତାଙ୍କ ପରିଦର୍ଶନରେ ଭାଗ ନେଇଛି।

---



ଇଂ. ବିନୋଦ ବିହାରୀ ସାହୁ
ଆବିର୍ଭାବ-୦୫।୦୮।୧୯୪୦
ତିରୋଧାନ-୨୪।୦୮।୨୦୧୨

ବିନୋଦ ବିହାରୀ ପୂର୍ତ୍ତ ବିଭାଗରେ କାମ କରି C.E ପଦରୁ ଅବସର ନେଲେ। ସେ ମୋର ନିର୍ବାହୀ ଯନ୍ତ୍ରୀ ଥିଲେ B.D.A ରେ ୧୯୯୩ ରେ। ତାଙ୍କର ପିତା ହେଉଛନ୍ତି ଇଂ. କାମେଶ୍ୱର ସାହୁ । କାମେଶ୍ୱର ବାବୁ ମୋର ଚାକିରି ଜୀବନର ପ୍ରଥମ S.D.O ଥିଲେ କଟକ ଡିଭିଜନ ରେ। ବିନୋଦ ଙ୍କ ଭିଣୋଇ ହେଉଛନ୍ତି ଇଂ. ଏକାଦଶିଆ ସାହୁ ଏବଂ ଇଂ. ଧରଣୀଧର ପ୍ରଧାନ।

---



ଗୁଣନିଧି ମହାପାତ୍ର
ଆବିର୍ଭାବ-୧୮।୦୫।୧୯୨୨
ତିରୋଧାନ-୨୪।୦୫।୨୦୧୨

ଭୁବନେଶ୍ୱର ମ୍ୟୁନସିପାଲଟିର ନଗରପାଳ ଥିଲେ। ସେ ଐତିହାସିକ କେଦାରନାଥ ମହାପାତ୍ରଙ୍କ ସାନଭାଇ। ସେ ମୋର ବନ୍ଧୁ ଚିତ୍ତରଞ୍ଜନ ମିଶ୍ରଙ୍କ ପାଖକୁ ଆସନ୍ତି ତାଙ୍କ ବ୍ରାହ୍ମଣ ଜାତିଆଣ ସଭା କଥା ବୁଝିବା ପାଇଁ। ସେଠି ଚିହ୍ନା ପରିଚୟ। ସେ ଲେଖିଛନ୍ତି ତାଙ୍କର ଆତ୍ମ ଜୀବନୀ "ମୋ କଥା, ମୋ ବ୍ୟଥା" ପ୍ରକାଶ ପାଇଛି ୨୦୦୫ରେ।

---



ରମେଶ ଚନ୍ଦ୍ର ପଣ୍ଡା

ଆବିର୍ଭାବ-

ତିରୋଧାନ-୧୮।୧୨।୨୦୧୧

କମ୍ୟୁନିଷ୍ଟ ନେତା ଓ ରଣପୁରର ବିଧାୟକ ଥିଲେ। ସେ ଆମ MLA ହେତୁ ଅନେକ ଥର ଭେଟିଛି। ମାଓ ନେତା ସବ୍ୟସାଚୀ ପଣ୍ଡାଙ୍କ ପିତା ଅଟନ୍ତି।

---



କିରଣ ଚନ୍ଦ୍ର ସିଂ ଦେଓ

ଆବିର୍ଭାବ-୩୦।୦୩।୧୯୩୦

ତିରୋଧାନ-୦୩।୧୨।୨୦୧୧

ପୂର୍ତ୍ତବିଭାଗର ଷ୍ଟେଟ ମିନିଷ୍ଟର ଥିଲେ ୧୯୯୨ରେ। କଳାହାଣ୍ଡି ମଦନପୁର ରାଜ ପରିବାରରେ ଜନ୍ମ। ମୁଁ ଫୁଲବାଣିରେ A.E.E. ଥିଲାବେଳେ ଦେଖା ହୁଏ। ସେ ଭବାନି ପାଟଣା ଯିବା ରାସ୍ତାରେ ବେଳେବେଳେ ଫୁଲବାଣି I.B. କୁ ଆସନ୍ତି।

---



ମାୟାବିନୀ ମଲ୍ଲ

ଆବିର୍ଭାବ-୧୯୩୦

ତିରୋଧାନ-୧୬।୦୮।୨୦୧୨

ଅବସର ପ୍ରାପ୍ତ ମୁଖ୍ୟ ଯନ୍ତ୍ରୀ ନରେଶ ଚନ୍ଦ୍ର ମଲ୍ଲଙ୍କ ସହଧର୍ମିଣୀ। ମଲ୍ଲ ସାହେବ ମୋର ଲେକଚରର ଥିଲେ କଟକ ଇଞ୍ଜିନିଅରିଂ ସ୍କୁଲରେ।

---



ଜଷ୍ଟିସ ରାଧା ଚରଣ ପଟ୍ଟନାୟକ

ଆବିର୍ଭାବ-୨୮।୦୭।୧୯୩୫

ତିରୋଧାନ-୩୦।୦୫।୧୯୯୨

ରାଧାଚରଣ ସୁପ୍ରିମକୋର୍ଟର ଜଷ୍ଟିସ ଥିଲେ। ସେ ସିଧା ହାଇକୋର୍ଟ ଜର୍ଜରୁ ସୁପ୍ରିମକୋର୍ଟ ଜଷ୍ଟିସ୍ ହୋଇଥିଲେ। ଆମର advocate ଥିଲେ R.E.O କେସ୍ ରିଭିୟୁ ପେଟିସନରେ। ସେ ଥିଲେ ଚିର କୁମାର।

---



ଏମ ଗୋପାଳ କୃଷ୍ଣ ରାଓ

ଆବିର୍ଭାବ -୧୭।୦୨।୧୯୪୪

ତିରୋଧାନ-୦୨।୧୦।୨୦୧୧

ଗଞ୍ଜାମ ଜିଲ୍ଲା ଛତ୍ରପୁରରେ ଜନ୍ମ। ୧୯୫୯ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସକରିଥିଲେ। ସେ ସେକ୍ରେଟେରିଏଟରେ works secretaryଙ୍କ ପ୍ରାଇଭେଟ ସେକ୍ରେଟେରି ପଦରୁ ଅବସର ନେଲେ। ସେ ଆମର ବନ୍ଧୁବାନ୍ଧବ ହେବେ।



ହରିହର ସ୍ୱାଇଁ

ଆବିର୍ଭାବ-୧୧।୧୧।୧୯୩୫

ତିରୋଧାନ-୧୩।୧୦।୨୦୧୨

ମୁଁ ଫୁଲବାଣିରେ ନିର୍ବାହୀ ଥିଲାବେଳେ ସେ ପୂର୍ତ୍ତମନ୍ତ୍ରୀ ଥିଲେ। ମୋ ପାଇଂ. ରମାବାବୁ ତାଙ୍କୁ କହିବାରୁ ମୋର ଫୁଲବାଣିରେ ନିଯୁକ୍ତି ମିଳିଲା।

ସମସ୍ତଙ୍କୁ ସାହାର୍ଯ୍ୟ କରିବା ତାଙ୍କର ମନୋଭାବ ଥିଲା।



ରାଇ ଚରଣ ଦାସ

ଆବିର୍ଭାବ-୧୯୩୮

ତିରୋଧାନ-୧୬।୧୨।୨୦୧୨

ସେ A.G ଅଫିସରେ କାମ କରୁଥିଲେ। ସେ ଥିଲେ ନାଟ୍ୟ ଜଗତର ବ୍ୟକ୍ତିତ୍ୱ। ଚଳଚିତ୍ର ରେ ମଧ୍ୟ କାମ କରିଥିଲେ। ମୋର ପିଉସିପୁଅ ଭାଇ କୃଷ୍ଣଚନ୍ଦ୍ର ଦୋରାଙ୍କ ଡ୍ରାମା ସାଙ୍ଗ।



ଶୈଳବାଳା ରଥ

ଆବିର୍ଭାବ-୨୪।୦୮।୧୯୩୩

ତିରୋଧାନ -୧୨।୦୨।୨୦୧୨

ଘର ବାଙ୍କି। ସ୍ୱାମୀ ହରିହର ରଥ। ସେ ପ୍ରଫେସର ଡାକ୍ତର ବିଭୂତି ତ୍ରିପାଠୀଙ୍କ ଭଉଣୀ। ମୋ ସ୍ତ୍ରୀ ଲାବଣ୍ୟ କଟକ ମେଡିକାଲରେ ୧୯୭୦ରେ

ଥିଲାବେଳେ ଶୈଳବାଳାଙ୍କ ମା' Diabetic comaରେ ଆମପାଖ ବେଡରେ ଥିଲେ। ସେଠୁଁ ଆମର ଚିହ୍ନା ପରିଚୟ। ଏହାଙ୍କ ପରିବାର ସତ୍ୟସାଇ ଆଶ୍ରିତ। ଶୈଳବାଳା ଲେଖିଛନ୍ତି ଭକ୍ତି ଅର୍ଘ୍ୟ। ଭଗବାନ ସାଇ ବାବାଙ୍କ ପ୍ରତି ଅଫୁରନ୍ତ ଭକ୍ତିର ନିଦର୍ଶନ।

---



ଡାକ୍ତର ଭୀମସେନ ସ୍ୱାଇଁ.
ଆବିର୍ଭାବ-୧୪।୦୬।୧୯୫୫
ତିରୋଧାନ-୧୫।୦୩।୨୦୧୨

ଭୀମସେନ ଆମ ଗାଁର ଆର୍ଯ୍ୟୁବେଦିକ ଡାକ୍ତର ଥିଲେ। ସେ ପୁରୀ ଆର୍ଯ୍ୟୁବେଦ କଲେଜର ଅଧ୍ୟାପକ ଥିଲେ।

---



ଇଂ. ମଦନ ମୋହନ କମିଲା
ଆବିର୍ଭାବ-୧୪।୧୦।୧୯୪୧
ତିରୋଧାନ-୨୫।୦୩।୨୦୧୩

ନିର୍ମାଣ ବିଭାଗର ମୁଖ୍ୟଯନ୍ତ୍ରୀ ହୋଇ ଅବସର ନେଲେ ସେ B.H.Uରୁ ଦ୍ୱିତୀୟ ହୋଇ ପାସ କରିଥିଲେ (୧୯୬୩)ରେ। ବୋଲଗଡର ଦୟାନିଧି ଚୌଧୁରୀ, ପୂର୍ବତନ ଚିଫ କଂଜରଭେଟର ଅଫ ଫରେଷ୍ଟ ତାଙ୍କ ଶଶୁର। ନୟାଗଡର ପ୍ରସିଦ୍ଧ ଓକିଲ ମାଧବ ଚୌଧୁରୀଙ୍କ ଝିଆରୀ ଜ୍ୱାଇଂ. ହେବେ। ୧୯୬୧ରେ ମୁଁ କଟକ ପରାଡାଇଜ ମେସରେ ରହୁଥିଲା ବେଳେ ସେ ବି ସେଠି ରହୁଥିଲେ। ମହାନଦୀ ବ୍ରିଜରେ ଟ୍ରେନିଂ ନେଉଥିଲେ। ସେ ଅତ୍ୟନ୍ତ ଭଦ୍ର ଓ ଧିରସ୍ଥିର।

---



ଡା କୃପାସିନ୍ଧୁ ନାୟକ
ଆବିର୍ଭାବ-୨୭।୧୦।୧୯୩୧
ତିରୋଧାନ-୦୬।୦୬।୨୦୧୨

ସେ ଜଣେ ଆର୍ଯ୍ୟୁବେଦ ଡାକ୍ତର ଥିଲେ। ଜନ୍ମ ଶରଣକୁଳ ଥାନା ଅନ୍ତର୍ଗତ ପଞ୍ଚରିଡା ମାନପୁର। ସେ ଶରଣକୁଳ ହାଇସ୍କୁଲ ସାମନା ଘରେ ତାଙ୍କ କ୍ଲିନିକ ଖୋଲିଥିଲେ।

---



ଆଧ୍ୟାପକ ମୃତ୍ୟୁଞ୍ଜୟ ପଟ୍ଟନାୟକ
ଆବିର୍ଭାବ-୧୯୩୫
ତିରୋଧାନ-

ଘର ଗୋଡି ସାହି (ନୟାଗଡ)। କଟକ Christ କଲେଜରେ ଓଡିଆ ପ୍ରଫେସର ଥିଲେ। ବହୁତ ବହି ଲେଖିଛନ୍ତି। ସେ ଶରଣକୁଳ ହାଇସ୍କୁଲ ଛାତ୍ର।

---



ଇଂ. ବାନାମ୍ବର ଦାସ
ଆବିର୍ଭାବ-୨୭।୦୭।୧୯୩୪
ତିରୋଧାନ-୦୧।୦୪।୨୦୧୩

ଅବସରପ୍ରାପ୍ତ ଜଳସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ। ଏହାଙ୍କ ଇଞ୍ଜିନିଅରିଂ କଲେଜ ସହପାଠୀ ବସନ୍ତ କୁମାର ପଣ୍ଡା ମୋର ବିରୁପା ବ୍ରିଜର S.D.O ଥିଲାବେଳେ ଦେଖା ହୋଇଥିଲେ।

---



ବାଳକୃଷ୍ଣ ମିଶ୍ର
ଆବିର୍ଭାବ-୦୧।୦୨।୧୯୨୦
ତିରୋଧାନ-୦୯।୦୩।୨୦୧୩

ଜନ୍ମସ୍ଥାନ କରଡା, ଶରଣକୁଳ ଥାନା। ମୋର ସାଙ୍ଗ ଦେବରାଜ ଦାସଙ୍କ ମାମୁଁ। ଓଡିଆ ପ୍ରଶାସନରେ କାମ କରୁଥିଲେ।

---



ଶୋଭନ କାନୁନଗୋ IAS
ଆବିର୍ଭାବ-୨୯।୦୩।୧୯୩୬
ତିରୋଧାନ-୨୫।୦୫।୨୦୨୧

ସେ ପୂର୍ବତନ ମନ୍ତ୍ରୀ ତଥା ରାଜ୍ୟପାଳ ନିତ୍ୟାନନ୍ଦ କାନୁନଗୋଙ୍କ କନିଷ୍ଠ ପୁତ୍ର। ୧୯୭୮ ରେ ସରକାର R.E.O ଉପରେ ଏକ କମିଟି କରିଥିଲେ, ତହିଁରେ ସେ ଚେୟାରମାନ ଥିଲେ। ଏହି କମିଟି R.E.Oକୁ ଭାଙ୍ଗି ଦେବା ପାଇଂ. ପ୍ରସ୍ତାବ କରିଥିଲେ ଏବଂ ଜାନକୀ

ବଲ୍ଲଭ ପଟ୍ଟନାୟକଙ୍କ ସରକାର ତାହା ଗ୍ରହଣ କରିଥିଲେ। R.E.O ଭାଙ୍ଗିବା ପରେ ହିଁ ଆମ୍ଭମାନଙ୍କର ପଦୋନ୍ନତି ସୁଗମ ହେଲା।



ରାଜ ମାତା ସବିତାମୟୀ ଦେବୀ
ଆବିର୍ଭାବ-୨୯।୦୯।୧୯୫୦
ତିରୋଧାନ-୧୦।୦୬।୨୦୧୩

ସେ ରାଜା କୃଷ୍ଣଚନ୍ଦ୍ର ସିଂଙ୍କ ହିନ୍ଦୋଳ ରାଣୀଙ୍କ ପୁଅ ଅମରେନ୍ଦ୍ରଙ୍କ ସହଧର୍ମିଣୀ।



ଶଙ୍କର ମହାରଣା
ଆବିର୍ଭାବ-୦୨।୦୪।୧୯୩୪
ତିରୋଧାନ-୦୮।୦୭।୨୦୧୨

ଜନ୍ମ କଟକ ବଣିଆ ସାହିରେ। ମୁଁ ୧୯୭୪-୭୫ରେ ଚିଫ ଇଞ୍ଜିନିଅର N.H ଅଫିସରେ କାମ କରୁଥିବା ମୋର ସହକର୍ମୀ ଇଂ. ପ୍ରଭାକର ଷଡଙ୍ଗୀଙ୍କର ବନ୍ଧୁ। ବଡ ସାହାଯ୍ୟକାରୀ ବ୍ୟକ୍ତି।



ଇଂ. ଗୋକୁଳ କୃଷ୍ଣ ଶତପଥି
ଆବିର୍ଭାବ: ୧୬।୦୭।୧୯୨୩
ତିରୋଧାନ: ୩୦।୦୮।୨୦୧୩

ସେ P.W.D.ରେ ନିର୍ବାହୀ ଯନ୍ତ୍ରୀ ରୂପେ କାମ କରି ଅବସର ନେଇଥିଲେ। ସେ ସମ୍ପାଦନା କରିଛନ୍ତି "ଭର୍ତ୍ତୃହରିଙ୍କର ସୁଭାଷିତ"। ବହିଟି ପ୍ରକାଶିତ ହୋଇଛି ୧୯୯୦ ରେ।



ଶ୍ରୀମତୀ ରାଧା ଦୋରା (କାନ୍ କ୍ଲୁ)
ସ୍ୱାମୀ ✓ ରାମଚନ୍ଦ୍ର ଦୋରା
ଆବିର୍ଭାବ -୧୯୩୦
ତିରୋଧାନ -୦୧।୧୦।୨୦୧୩

ବଡଗୋରଡ଼ା, ଥାନା ଶରଣକୁଳ, ନୟାଗଡ। ସେ ମୋର ପିଉସିପୁଅ

ଭାଇ ରାମଚନ୍ଦ୍ର ଦୋରାଙ୍କ ଧର୍ମପତ୍ନୀ। ଅତ୍ୟନ୍ତ ସ୍ନେହଶୀଳା। ତାଙ୍କ ବଡପୁଅ ହରିହର ରାଷ୍ଟ୍ରପତି ଓ ରାଜ୍ୟପାଳ ପୋଲିସ ମେଡାଲ ପାଇଛନ୍ତି। ସାନ ପୁଅ ନାରାୟଣ ରାଷ୍ଟ୍ରପତି ମେଡାଲ ପାଇଛନ୍ତି।

---



ସିଙ୍ଗା ସେଟ୍ଟୀ ମୁତ୍ୟାଲୁମା
ଆବିର୍ଭାବ - ୧୯୪୭
ତିରୋଧାନ-୧୩।୦୨।୨୦୧୪

ଘର ଦୋଳ ମଣ୍ଡପ ସାହି, ଜୟପୁର। ଇଂ. ରାମଲିଙ୍ଗେଶ୍ୱରଙ୍କ ଧର୍ମ ପତ୍ନୀ। ରାମ ଲିଙ୍ଗେଶ୍ୱର ଖଡଗପୁରରୁ M.Tech ପାସ କରିଥିଲେ। ତାଙ୍କର କିଡନି ନଷ୍ଟ ହେବାରୁ ତାଙ୍କ ସାନ ଭାଇ ଗୋଟେ କିଡନି ଦେଇଥିଲେ। ମୁଁ M.L.A Quarter ୧୦/୪ ଥିଲାବେଳେ ସେ ସେଠାରେ ରହୁଥିଲେ। ରାମ ଲିଙ୍ଗେଶ୍ୱରଙ୍କ ଜନ୍ମ ୦୬।୦୫। ୧୯୩୮ ଏବଂ କିଡନି ଜନିତ ରୋଗରେ ଅକାଳରେ ମୃତ। ଏହି ଦମ୍ପତିଙ୍କର ୩ପୁଅ ଓ ଗୋଟିଏ ଝିଅ।

---



ଶୈଳବାଳା ସାମନ୍ତରାୟ
ସ୍ୱାମୀ: ଇଂ. ଇନ୍ଦ୍ରଜିତ ସାମନ୍ତରାୟ
ଆବିର୍ଭାବ -୧୩।୦୫।୧୯୪୩
ତିରୋଧାନ-୦୧।୧୧।୨୦୧୨

ଇଂ. ଇନ୍ଦ୍ରଜିତ ମୋର ବନ୍ଧୁ। ସେ S.E ପଦରୁ ଅବସର ନେଇ ଏବେ ବରମୁଣ୍ଡାର ଜଗନ୍ନାଥ ବିହାରରେ ରହୁଛନ୍ତି। ସେ ପ୍ରସିଦ୍ଧ ତାପଙ୍ଗ ଦଳବେହେରା ପରିବାରର ସନ୍ତାନ।

---



ଇଂ. ଚିତ୍ତରଞ୍ଜନ କର
ଆବିର୍ଭାବ-୨୬।୧୧।୧୯୪୧
ତିରୋଧାନ-୨୧।୦୧।୨୦୧୪

ସେ ଇଞ୍ଜିନିଅର କଲେଜର ୧୯୬୩ ବ୍ୟାଚ। ସେ ଏହି କଲୋନିରେ ରହୁଥିବାରୁ ଦେଖା ସାକ୍ଷାତ ହୁଏ।

---

ଇଂ. ବାଉରୀବନ୍ଧୁ ନନ୍ଦ
ଆବିର୍ଭାବ - ୧୯୩୩
ତିରୋଧାନ -୦୭।୦୬।୨୦୧୩



ସେ P.H. (Water Works) ବିଭାଗରୁ ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ। ସେ ଡିପ୍ଲୋମା ଇଞ୍ଜିନିଅର ଆସୋସିଏସନ କର୍ମକର୍ତ୍ତା ଥିଲେ।



ଇଂ. ଶ୍ୟାମ ସୁନ୍ଦର ପଣ୍ଡା
ଆବିର୍ଭାବ-୨୪।୧୦।୧୯୨୫
ତିରୋଧାନ-୨୫।୦୩।୨୦୧୪

ପୂର୍ତ୍ତ ବିଭାଗରେ ମୁଖ୍ୟ ଯନ୍ତ୍ରୀ ହୋଇ ଅବସର ନେଲେ। ମୁଁ କଟକ ଡିଭିଜନରେ S.E ଥିଲାବେଳେ ସେ ସେଣ୍ଟ୍ରାଲ ସର୍କଲର S.E ଥିଲେ (୧୯୭୮)।



ନିରୁପମା ଖୁଣ୍ଟିଆ
ଆବିର୍ଭାବ-ସେପ୍ଟେମ୍ବର ୧୯୪୦
ତିରୋଧାନ-୩୦।୦୩।୨୦୧୪

ଘର ତିନି ଘରିଆ, କଟକ। ସେ ଯତୀନ୍ଦ୍ର ନାଥ ଖୁଣ୍ଟିଆ OASଙ୍କ ଧର୍ମପତ୍ନୀ । ମୁଁ ୧୯୮୮ରୁ ୯୨ ପର୍ଯ୍ୟନ୍ତ ନୟାଗଡର PWDS.D.O ଥିଲାବେଳେ ଖୁଣ୍ଟିଆ ବାବୁ ନୟାଗଡର ସବ୍ କଲେକ୍ଟରଥିଲେ।



ଇଂ. ଗୟେଶ୍ୱର ପାତ୍ର
ଆବିର୍ଭାବ-୧୫।୦୬।୧୯୩୮
ତିରୋଧାନ-୦୯।୦୪।୨୦୧୪

ଓଡଗାଁ ଥାନା ଚମ୍ପାପାଣ୍ଡି ଗ୍ରାମରେ ଜନ୍ମ। ତାଙ୍କ ସଂପ୍ରଦାୟରୁ ସେହିଁ ପ୍ରଥମ ବ୍ୟକ୍ତି ପାଠ ପଢିଲେ ଇଞ୍ଜିନିଅର ସ୍କୁଲରେ। ସହକାରୀ ଯନ୍ତ୍ରୀ ପଦରୁ ଜଳ ସେଚନ ବିଭାଗରୁ ଅବସର ନେଲେ।



ପ୍ରଫେସର ପ୍ରଫୁଲ ପଟ୍ଟନାୟକ
ଆବିର୍ଭାବ -୧୯୩୨
ତିରୋଧାନ-୨୭।୦୪।୧୪

ପ୍ରଫୁଲ ପଟ୍ଟନାୟକ ଇତିହାସର ଅଧ୍ୟାପକ ଥିଲେ। ଜଗନ୍ନାଥ ସଂସ୍କୃତି ଓ ଖୋରଧା ଐତିହ ଉପରେ ୧୫ଟି ପୁସ୍ତକ ରଚନା କରିଛନ୍ତି। ସେ ପୂର୍ତ୍ତବିଭାଗ ଅଧ୍ୟକ୍ଷଣ ଯନ୍ତ୍ରୀ ମଧୁସୂଦନ ପଟ୍ଟନାୟକଙ୍କ ବଡଭାଇ।

---



ଇଂ. କୃଷ୍ଣଚନ୍ଦ୍ର ପଣ୍ଡା
ଆବିର୍ଭାବ-୦୨।୦୧।୧୯୩୯
ତିରୋଧାନ-୨୯।୦୫।୨୦୧୪

ସେ ମୋ କ୍ଲାସମେଟ। ଜନ୍ମ ଅଢେଇ ଗୁଣ୍ଠି, ନରସିଂହ ପୁର। ସେ ରାଜ୍ୟ ସରକାରଙ୍କ ବିଦ୍ୟୁତ ବିଭାଗରେ ସହକାରୀ ଯନ୍ତ୍ରୀ ହୋଇ ଅବସର ନେଇଥିଲେ। କଟକ ଇଞ୍ଜିନିଅର ସ୍କୁଲରେ ମୋର ହଷ୍ଟେଲ ରୁମମେଟ ଥିଲେ ୧୯୫୮ ରୁ ୧୯୫୯।

---



ଇଂ. ରବୀନ୍ଦ୍ର ନାଥ ବିଶୋଇ
ଆବିର୍ଭାବ-୨୯।୦୯।୧୯୪୧
ତିରୋଧାନ-୧୪।୦୫।୨୦୧୪

ସେ ପୂର୍ତ୍ତବିଭାଗରେ ଚିଫ ଇଞ୍ଜିନିଅର ପଦରେ କାମ କରି ଅବସର ନେଲେ। ସେ ଭୁବନେଶ୍ବର N.H.Division ରେ E.E ଥିଲାବେଳେ ମୋର ସମସ୍ୟା ପାଇଂ. ମୁଁ ତାଙ୍କୁ ଦେଖାକରିଥିଲି ।

---



କବି ବ୍ରଜନାଥ ରଥ
ଆବିର୍ଭାବ-୧୨।୦୧।୧୯୩୬
ତିରୋଧାନ-୩୧।୦୫।୨୦୧୪

ସେ ଜଣେ ସାରସ୍ୱତ ସଂଗଠକ। କବିରଥଙ୍କ ରଚିତ ବହୁ କବିତା ଇଂରାଜି, ହିନ୍ଦୀ, ବଙ୍ଗଳା, ଆସାମିଆ,

ଗୁଜୁରାଟୀଓ ମରାଠୀ ଆଦି ଭାଷାରେ ଅନୁଦିତ। ଓଡିଆ ସାହିତ୍ୟ ଜଗତର ଜଣେ ବରେଣ୍ୟ ସ୍ରଷ୍ଟା। ମୁଁ ଥରେ ମୋ ନିଜ କାମରେ ବାଲେଶ୍ୱର ଗଲାବେଳେ ତାଙ୍କୁ ସୁନହଟ ଘରେ ଭେଟିଥିଲି। ଦେଖିଲି ତାଙ୍କର ବିରାଟ ଲାଇବେରୀ।

---



ରାମାକାନ୍ତ ମହାପାତ୍ର
ଆବିର୍ଭାବ-୦୨।୦୯।୧୯୪୦
ତିରୋଧାନ-୦୭।୦୭।୨୦୧୪

ସେ 'ଭୁବନେଶ୍ୱର ଗ୍ରନ୍ଥାଳୟ' ସ୍ଥାପନ କରି ଉଚକୋଟିର ବହି ବିକ୍ରୟ କରୁଥିଲେ। ମୁଁ ତାଙ୍କୁ ମୋର ସଂକଳିତ ପୁସ୍ତକ ବିକ୍ରୟ ପାଇଁ ଦେଇଥିଲି।

---



ଦାଶରଥୀ ପଟ୍ଟନାୟକ
(ଦାସିଆ ଅଜା )

ଆବିର୍ଭାବ-୧୨।୦୭।୧୯୦୭
ତିରୋଧାନ-୧୯୯୭

ସେ ନୟାଗଡ ଜିଲ୍ଲାର ଦଶପଲା ଯିବା ରାସ୍ତାରେ ତାଙ୍କ ଗାଁ ଉଦୟପୁରରେ ଏକ ବିରାଟ ପାଠାଗାର କରିଛନ୍ତି। ମୁଁ ତାଙ୍କୁ ଏହି ପାଠାଗାର ଠାରେ ଭେଟିଛି।

---



ଗୋପାଳ ଚନ୍ଦ୍ର ପଟ୍ଟନାୟକ
ଆବିର୍ଭାବ-୧୬।୦୬।୧୯୨୫
ତିରୋଧାନ-୨୦।୦୭।୨୦୧୪

ଜନ୍ମ: ସାନଗୋରଡ଼ା (ଶରଣକୁଳ)। ସେ ସ୍କୁଲ D.P.I. ପଦରେ କାମ କରି ଅବସର ନେଇଥିଲେ। ନୟାଗଡ ରାଜାଙ୍କ ପୂର୍ବତନ ତହସିଲଦାର କୁଞ୍ଜବିହାରୀ ପଟ୍ଟନାୟକଙ୍କ ପୁତ୍ର। ସେ ବିଶିଷ୍ଟ ଶିଳ୍ପପତି ଭାଗବତ ମହାନ୍ତିଙ୍କ ଜାମାତା। ନୟାଗଡରେ ନବ ଗଠିତ ନୟାଗଡ ମହାବିଦ୍ୟାଳୟର ପ୍ରଥମ ଅଧ୍ୟକ୍ଷ ଭାବରେ ନିରବିଚ୍ଛନ୍ନ ସାଧନା କରି ପ୍ରମୁଖ ଶିକ୍ଷାନୁଷ୍ଠାନ କରିଥିଲେ। ✓ ପ୍ରିୟବ୍ରତ ପଟ୍ଟନାୟକ IAS ତାଙ୍କର ପୁତ୍ର ଅଟନ୍ତି।

---



ଅକ୍ଷୟ କୁମାର ବିଶ୍ୱାଳ I.A.S.
ଆବିର୍ଭାବ-
ତିରୋଧାନ-୧୨।୦୫।୨୦୧୭

ସେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ସେକ୍ରେଟେରୀ ଥିଲେ। ୧୯୭୮ ରେ ମୁଖ୍ୟମନ୍ତ୍ରୀ ଯେଉଁ R.E.O ସଂକ୍ରାନ୍ତକମିଟି କରିଥିଲେ, ତାକୁ ସୁଚାରୁ ରୂପେ ପରିଚାଳନା କରିଥିଲେ। ଉପୁଜୁଥିବା ବାଧାକୁ ସୁନିୟନ୍ତ୍ରିତ କରିଥିଲେ।

---



ଚିତ୍ରଶିଳ୍ପୀ କୃଷ୍ଣଚନ୍ଦ୍ର ଆଚାରୀ
ଆବିର୍ଭାବ-୫।୧୨।୧୯୩୯
ତିରୋଧାନ: C ୧୯୨୦

ଖଲିକୋଟ ଆର୍ଟ କଲେଜରୁ ଫାଇନ ଆର୍ଟରେ ପାସକରି ସ୍ୱାସ୍ଥ୍ୟ ବିଭାଗରେ ଫଟୋଗ୍ରାଫର ଥିଲେ। ସେ ଆରମ୍ଭ କରିଥିଲେ ଚିତ୍ରମ ସ୍କୁଲ ଅଫ ଆର୍ଟସ ଆଣ୍ଡ କ୍ରାଫ୍ଟ, ଆଜିର ବି:କେ ଆର୍ଟସ କଲେଜ। ଦିବ୍ୟଜୀବନ ସଂଘର ଜଣେ ବଡ ସଭ୍ୟ। ଆମେ M.L.AQuarter ରେ ୧୯୬୬ ରେ ଏକାଠି ରହୁଥିଲୁ।

---



ଇଂ. ଶତ୍ରୁଘ୍ନ ବାରିକ
ଆବିର୍ଭାବ-୧୩।୦୬।୧୯୩୯
ତିରୋଧାନ-୩୧।୧୨।୨୦୧୪

ବୁର୍ଲାର ୧୯୬୧ ବ୍ୟାଚ ପାସ ଇଞ୍ଜିନିଅରିଂ ଛାତ୍ର। ନିର୍ମାଣ ବିଭାଗରେ ଚିଫ ଇଞ୍ଜିନିଅର ହୋଇ ଅବସର ନେଇ ଥିଲେ। ମୁଁ ଫୁଲବାଣୀ (R&B) Divisonରେ A.E.E ଥିଲାବେଳେ ସେ ଥିଲେ C.E. designs। ତାଙ୍କଠାରୁ ମଞ୍ଜୁରି ଆଣି ୫ଟି ମାଇନର ବ୍ରିଜର କାଗଜ ପତ୍ର କରାଇଥିଲି।

---



ଇଂ. ବିଭୁ ପ୍ରସାଦ ନନ୍ଦ

ଆବିର୍ଭାବ- ୧୦।୦୨।୧୯୩୯
ତିରୋଧାନ -୦୫।୦୧।୨୦୧୫

ସେ ମୋର ଇଞ୍ଜିନିୟରିଂ ସ୍କୁଲ କ୍ଲାସମେଟ। SC ପାସ କରି ଡିପ୍ଲୋମା ପଢିଥିଲେ।

---



ରୋଟାରିଆନ ବସନ୍ତ କୁମାର ମହାପାତ୍ର
ଆବିର୍ଭାବ-୦୫।୦୫।୧୯୪୯
ତିରୋଧାନ-୦୨।୦୩।୨୦୧୫

ମୁଁ ନୟାଗଡରେ P.W.D.S.D.O ଥିଲାବେଳେ ୧୯୯୦-୯୧ରେ ଗଠନ କରାଯାଇଥିଲା ରୋଟାରି କ୍ଲବ। ବସନ୍ତ ବାବୁ କ୍ୟାସିଅର ଥିଲେ। ତାଙ୍କର ନିଜର ମଟର ପାର୍ଟର ଦୋକାନ ଥିଲା।

---



ଶିକ୍ଷାବୀତ ଶିବରାମ ପଟ୍ଟନାୟକ
ଆବିର୍ଭାବ-୨୦।୦୭।୧୯୩୫
ତିରୋଧାନ-ଅପ୍ରିଲ ୨୦୧୫

ସ୍ୱର୍ଗତ ପଟ୍ଟନାୟକ ମାଧ୍ୟମିକ ଶିକ୍ଷା ବୋର୍ଡର ସଚିବ ଓ ସଭାପତି, ଉଚ୍ଚ ମାଧ୍ୟମିକ ବୋର୍ଡର ଉପସଭାପତି, ରାଜ୍ୟ ପ୍ରାଥମିକ ଶିକ୍ଷା ତଥା ପ୍ରୌଢ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଇତ୍ୟାଦି ଥିଲେ। ୧୯୭୫ ରେ ସେ ପୁରୀରେ ସର୍କଲ ଇନସପେକ୍ଟର ଥିଲାବେଳେ ଦରଖାସ୍ତ ଦେଇ ମୋ ଉପର ଭାଇ ଦଣ୍ଡପାଣି ଖୋରଧା ଶିକ୍ଷା ଜିଲ୍ଲାରୁ ନୟାଗଡ ଶିକ୍ଷା ଜିଲ୍ଲାକୁ ବଦଳି ହୋଇଥିଲେ।

---



ଇଂ. ଶରତ କୁମାର କର
ଆବିର୍ଭାବ -୦୨।୦୨।୧୯୩୯
ତିରୋଧାନ-୧୬।୦୬।୨୦୧୪

ଘର ଢେଙ୍କାନାଳ। ମୋର ଇଂଜିନିୟରିଂ ସ୍କୁଲ ସହପାଠୀ। ସରକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ। ସେ ଥିଲେ ଏନ୍ ସି ସି ଲିଡର।

---



ମଦନ ମୋହନ ମହାନ୍ତି

ଆବିର୍ଭାବ-

ତିରୋଧାନ-୨୪।୦୫।୨୦୧୫

ଜନ୍ମ ଗ୍ରାମ ଶରଣକୁଳ ଥାନା ପୁଆଣିଆ। ତାଙ୍କ ପରିବାରକୁ ସାଉକାର ଘର କହନ୍ତି। ସେ ଜଣେ ସିନିୟର OAS ଅଫିସର ଥିଲେ । ପ୍ରଫେସର ଡାକ୍ତର ପାର୍ଥରାଓ ଙ୍କର ଶଢୁ ଥିଲେ। ମଦନଙ୍କ ସାନ ଭାଇ ସୁଦର୍ଶନ ମୋ ବଡଭାଇ ମଦନ ମୋହନ ଦୋରାଙ୍କ ସାଙ୍ଗ।



ଇଂ. ବିରେନ ରାଉତରାୟ
(ବିଶିଷ୍ଟ ଅଭିନେତା)

ଆବିର୍ଭାବ-୨୭।୦୯।୧୯୩୯

ତିରୋଧାନ-୨୪।୧୧।୨୦୧୪

ଜନ୍ମସ୍ଥାନ ଜଗତସିଂହପୁର। ୧୯୬୩ ଇଂଜିନିଅରିଂ କଲେଜ ବ୍ୟାଚ। ମୁଖ୍ୟ ଯନ୍ତ୍ରୀ ଭାବେ ଅବସର ନେଇଥିଲେ। ୧୯୬୯ ରେ ଶ୍ରେଷ୍ଠ କଳାକାର ଭାବେ ଶ୍ରେଷ୍ଠ ନାଟ୍ୟକାର ଏବଂ ସମ୍ମାନର ଅଧିକାରୀ ହୋଇଥିଲେ।



ବିନୋଦ ପଟ୍ଟନାୟକ

ଆବିର୍ଭାବ-୧୯୫୨

ତିରୋଧାନ-୧୮।୧୧।୨୦୧୪

ଖଣି ଓ ଭୂତତ୍ତ୍ୱ ବିଭାଗର ଡ଼ିରେକ୍ଟର ଥିଲେ। ଓଡିଶାର ବୋକସାଇଟ ପ୍ରକଳ୍ପ ଏବଂ ମୁଲ୍ୟବାନ ରତ୍ନ ପଥର ଖନନ ତାଙ୍କର କାର୍ଯ୍ୟ ଉଲ୍ଲେଖନୀୟ କାର୍ଯ୍ୟ। ସେ ଆମ ବରମୁଣ୍ଡା H.B କଲୋନୀରେ ରହୁଥିଲେ। ସେ ଜଣେ ଅସାଧାରଣ ସାହାଯ୍ୟକାରୀ।



ଶିଶିର କୁମାର ରଥ

ଆବିର୍ଭାବ-୧୫।୦୧।୧୯୪୪

ତିରୋଧାନ-୦୪।୧୨।୨୦୧୪

ଜନ୍ମସ୍ଥାନ ବାଉଁଶିଆ (ଶରଣକୁଳ ଥାନା)। ସେ ହୋମିଓପାଥି ପ୍ରାକଟିସ କରୁଥିଲେ। ଅନୁଗୁଳରେ ଘର କରି ରହିଲେ। ମୋର ସାଙ୍ଗ ଇଂ. ଚିନ୍ତାମଣି ରଥଙ୍କ ସାନଭାଇ। ଶିଶିରଙ୍କ ପିତା

ବାମଦେବ ରଥ ମୋ ୧୯୪୬ରେ L.P Schoolର ଶିକ୍ଷକ ଥିଲେ।

---



ଇଂ. ହରିହର ପାତ୍ର
ଆବିର୍ଭାବ-୦୩।୦୭।୧୯୩୨
ତିରୋଧାନ-୦୯।୦୧।୨୦୧୪

ଚିଫ ଇଞ୍ଜିନିଅର ହୋଇ ଅବସର ନେଲେ। ମୁଁ ୧୯୭୭ରେ ଜଗତସିଂହପୁର (R&B) ଡିଭିଜନରେ ଯୋଗ ଦେଲା ବେଳକୁ ସେ ସେଠାରୁ ବଦଳି ହୋଇ ନିର୍ବାହୀ ଯନ୍ତ୍ରୀ ହିସାବରେ ଚାରିବାଟିଆ ଗଲେ।

---



ଇଂ. ଶ୍ରୀନିବାସ ଚୌଧୁରୀ
ଆବିର୍ଭାବ-୦୩।୦୩।୧୯୩୫
ତିରୋଧାନ-୩୦।୦୧।୨୦୧୪

ସେ ବୁର୍ଲା ଇଞ୍ଜିନିଅରିଂ କଲେଜରୁ ୧୯୬୦ ରେ ପାସ କରିଥିଲେ। ୧୯୬୧ ବେଳକୁ ସେ N.H. Laboratory ରେ ରିସର୍ଚ୍ଚ ଅଫିସର ଥିଲେ। ମୁଁ ସେତେବେଳେ N.H. laboratory ରେ କାମ କରୁଥିଲି। ସେ S.E ହୋଇ ଅବସର ନେଇଥିଲେ।

---



ଇଂ. ମଦନ ମୋହନ ପଟ୍ଟନାୟକ
ଆବିର୍ଭାବ-୦୫।୧୧।୧୯୩୦
ତିରୋଧାନ-୧୮।୦୨।୨୦୧୫

ସେ ବୋଲଗଡ ପାଖ ଦଘିରୀରେ ଜନ୍ମ ହୋଇଥିଲେ। ଜଳସେଚନ ବିଭାଗରେ ମୁଖ୍ୟଯନ୍ତ୍ରୀ ହୋଇ ଅବସର ନେଲେ। ମୁଁ ନୟାଗଡ଼ରେ P.W.D S.D.O ଥିଲାବେଳେ ଦେଖିଛି ସେ ତାଙ୍କ ଗାଁ ପାଖ ରାସ୍ତା କଡ଼ରେଘର କରୁଥିଲେ।

---



ସମରେନ୍ଦ୍ର ପଟ୍ଟନାୟକ
ଆବିର୍ଭାବ-୨୩।୦୨।୧୯୪୦
ତିରୋଧାନ-୦୬।୦୫।୨୦୧୫

ମୁଁ BDAରେ କାମ କରୁଥିଲା ବେଳେ ସେ ପ୍ଲାନିଙ୍ଗ ମେମ୍ବର ଥିଲେ। ନୟାଗଡ଼ର ଆଡଭୋକେଟ କୃପାସିନ୍ଧୁ ପଟ୍ଟନାୟକଙ୍କ ପୁଅ ଏବଂ କମ୍ୟୁନିଷ୍ଟ ନେତା ଓ ସାଂସଦ ଶିବାଜୀ ପଟ୍ଟନାୟକଙ୍କ ସାନ ଭାଇ।



ମନ୍ମଥ ନାଥ ଶତପଥୀ
ଆବିର୍ଭାବ-୧୭।୩।୧୯୩୬
ତିରୋଧାନ-୨୦୧୭

ଜଏଣ୍ଟ ଡ଼ିରେକଟର ହୋଇ ଭୂତତ୍ତ୍ୱ ଓ ଖଣି ବିଭାଗରୁ ଅବସର ନେଲେ। ସେ ଏକାମ୍ର ହାସ୍ୟ କ୍ଲବର ସଭ୍ୟ। ଆମେ ପ୍ରାୟ ୧୨ ବର୍ଷ କାଳ ବ୍ୟାୟାମ କରୁଥିଲୁ କ୍ଲବରେ।



ଶୈଳବାଳା ମହାପାତ୍ର
ଆବିର୍ଭାବ-୦୪।୦୧।୧୯୫୦
ତିରୋଧାନ-୨୫।୦୬।୨୦୧୬

ମୋର ବନ୍ଧୁ ଇଂ. ଗୌରଚନ୍ଦ୍ର ମହାପାତ୍ରଙ୍କ ଧର୍ମପତ୍ନୀ। କଟକ P.M ଏକାଡେମିର ଶିକ୍ଷକ ଭାସ୍କର ଚନ୍ଦ୍ର ଶତପଥି (ଭୂଗୋଳ ଶିକ୍ଷକ)ଙ୍କ କନ୍ୟା। ସେ ଜଣେ କବିୟତ୍ରୀ। ଗୌରଚନ୍ଦ୍ର ନିର୍ମାଣ ବିଭାଗରେ ନିର୍ବାହୀ ଯନ୍ତ୍ରୀ ପଦରେ ଥିଲେ।



ପ୍ରଫେସର ଡକ୍ଟର ଗଣେଶ୍ୱର ମିଶ୍ର
ଆବିର୍ଭାବ-୧୯୪୨
ତିରୋଧାନ-୨୦୧୫

ସାହିତ୍ୟିକ। ଇଂରାଜି ପ୍ରଫେସର। ଅନେକ ଗଳ୍ପ ପୁସ୍ତକର ରଚୟିତା। ବ୍ୟକ୍ତିଗତ ଭାବରେ ଚିହ୍ନା ପରିଚୟ। ଜଣାଶୁଣା ସାମ୍ବାଦିକ ସନ୍ଦୀପ ମିଶ୍ରଙ୍କ ପିତା। ଓଡିଆ ସାହିତ୍ୟ ଏକାଡ଼େମୀର ସଭାପତି ରୂପେ ୨୦୦୫ରୁ ୨୦୦୭ରେ ଥିଲେ।



ଶରତ କୁମାର ଷଡଙ୍ଗୀ

ଆବିର୍ଭାବ-୨୯।୦୬।୧୯୩୬
ତିରୋଧାନ-୦୫।୦୭।୨୦୧୬
ୟୁନିଟ-VI ହାଇସ୍କୁଲର ହେଡମାଷ୍ଟର ଥିଲେ। ସେ ଜଣେ ଟାଣୁଆ ହେଡମାଷ୍ଟର ଥିଲେ। ଅନେକ ବହି ଲେଖିଛନ୍ତି। ସେ ଆମ କଲୋନିରେ ରହୁଥିଲେ। ବ୍ୟକ୍ତିଗତ ବନ୍ଧୁ।



ଇଂ. ପରମାନନ୍ଦସାହୁ
ଆବିର୍ଭାବ-୧୬।୦୧।୧୯୪୫
ତିରୋଧାନ-୨୧।୦୮।୨୦୧୬
ଜନ୍ମିତ ସ୍ଥାନ କନ୍ଦର ପୁର, କଟକ। ନିର୍ମାଣ ବିଭାଗରେ ମୁଖ୍ୟଯନ୍ତ୍ରୀ ହୋଇ କାମ କରୁଥିଲେ। ସେ ମୋର C.E.N.H ଅଫିସରେ ସହକର୍ମୀ ଥିଲେ।



ଦୀନନାଥ ପାଠୀ
ଆବିର୍ଭାବ-୧୯୪୨
ତିରୋଧାନ-୨୦୧୬
ବିଶିଷ୍ଟ ଚିତ୍ରଶିଳ୍ପୀ, ଔପନାସିକ। ନିଜର ଆତ୍ମଜୀବନୀ ଲେଖିଛନ୍ତି। ଘର ଦିଗପହଣ୍ଡି ଗଞ୍ଜାମ। ମୋର ଚିହ୍ନା ପରିଚୟ ଥିଲା।



ଇଂ. ବିବେକାନନ୍ଦ ଦାସ
ଆବିର୍ଭାବ-୦୬।୦୭।୧୯୨୬
ତିରୋଧାନ-୦୪।୦୯।୨୦୧୬
ନିର୍ମାଣ ବିଭାଗରେ କାମ କରି ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେଲେ। ନୟାଗଡ ରାଜାଙ୍କ ମନ୍ତ୍ରୀ ଥିବା ରାୟ ସାହେବ ବିଶ୍ୱମ୍ବର ମହାନ୍ତିଙ୍କ ଜାମାତା। ସେ ମୋର S.E. ଥିଲେ ମୁଁ N.H Division, ଭୁବନେଶ୍ୱରରେ କାମ କଲାବେଳେ। ଏହାଙ୍କଜଣେ ଭଉଣୀ ଡାକ୍ତର ଉଷା ଦାସଙ୍କୁ ପ୍ରସିଦ୍ଧ ଲେଖକ ଚିତ୍ତରଞ୍ଜନ ଦାସ ବିବାହ କରିଛନ୍ତି।



ଗୋପାଳଚନ୍ଦ୍ର ବାନାର୍ଜୀ

ଆବିର୍ଭାବ-୧୧।୦୧।୧୯୩୬
ତିରୋଧାନ-୦୮।୦୯।୨୦୧୩

ସେ A.G ଅଫିସରେ ଆକାଉଣ୍ଟସ ଅଫିସର ଥିଲେ। ମୁଁ A.G. Colony H. type ଘରେ ରହୁଥିଲା ବେଳେ ସେ ମୋର ପଡୋଶୀ ଥିଲେ।

---



ଆଡଭୋକେଟ କିଶୋର ଚନ୍ଦ୍ର ଶତପଥି
ଆବିର୍ଭାବ-୧୧।୦୧।୧୯୪୨
ତିରୋଧାନ-୧୯।୧୧।୨୦୧୫

ନୟାଗଡ କଚେରିରେ ଓକିଲାତି କରୁଥିଲେ। ନୟାଗଡ଼ ରୋଟାରି କ୍ଲବର ସଦସ୍ୟ ଥିଲେ। କଣ୍ଟିଲୋର ପୂର୍ବତନ ହେଡମାଷ୍ଟର ଉପେନ୍ଦ୍ର ଶତପଥିଙ୍କ ପୁତୁରା।

---



ଆର.ବି ପଟ୍ଟନାୟକ
ଆବିର୍ଭାବ-୦୨।୦୨।୧୯୩୮
ତିରୋଧାନ-୦୪।୧୨।୨୦୧୬

ସେ ରାଜ୍ୟପାଳଙ୍କ ଡେପୁଟି ସେକ୍ରେଟେରି ଥିଲେ। ଭଲ ଇଂରାଜି ଜ୍ଞାନ। ମୋର ସଂକଳିତ ୧୧୬୨ ପୃଷ୍ଠାର ବହି "Places of Tourist interest in Odisha "A culture guide କୁ ଧୈର୍ଯ୍ୟର ସହିତ ପ୍ରୁଫ କରେକସନ ସାଙ୍ଗକୁ ଭାଷା ମଧ୍ୟ ବଦଳାଇ ଥିଲେ।

---



ଭାଗରଥି ହୋତା
ଆବିର୍ଭାବ: ୧।୦୮।୧୯୪୧
ତିରୋଧାନ: ୮/୯/୨୦୧୯

ସେ ଆମ ନୟାଗଡ ରୋଟାରି କ୍ଲବର ସଭ୍ୟ ଥିଲେ। ତାଙ୍କ ଘର ଶରଣକୁଳ ଥାନାର ପତ୍ତିଖାଡି। ସେ ଟେଲିଫୋନ ବିଭାଗରେ କାମ କରୁଥିଲେ।

---



ପ୍ରମୋଦ କୁମାର ମହାପାତ୍ର
ଆବିର୍ଭାବ-୦୧।୦୧।୧୯୪୦
ତିରୋଧାନ-୦୮।୦୧।୨୦୧୭

ସେ ସେଲସଟାକ୍ସ ବିଭାଗରେ କାମ କରୁଥିଲେ। ଆମର ହାସ୍ୟକ୍ଲବର ସଦସ୍ୟ ଥିଲେ। ଖେଳ ଶେଷରେ ଆମକୁ ଗୀତା ଶୁଣାଉଥିଲେ।

---



ଇଂ. କାଶୀନାଥ ମିଶ୍ର
ଆବିର୍ଭାବ-୦୮।୦୨।୧୯୪୪
ତିରୋଧାନ-୨୧।୦୧।୨୦୧୭

ଜନ୍ମ ଖଣ୍ଡପଡା। ମୁଁ ନୟାଗଡ ଏବଂ ଫୁଲବାଣୀରେ କାମ କରୁଥିଲାବେଳେ ମୋର ସହକର୍ମୀ ଥିଲେ। ସେ ଜଣେ କର୍ମଠ ଯନ୍ତ୍ରୀ ଥିଲେ।

---



ଇଂ. ଶିବରାମ ପ୍ରସାଦ ଗନ୍ତାୟତ
ଆବିର୍ଭାବ-୧୫।୦୬।୧୯୩୪
ତିରୋଧାନ-୨୨।୦୧।୨୦୧୭

ପାରଳାଖେମୁଣ୍ଡିରେ ଜନ୍ମ। ଓଡ଼ିଶା ସରକାରଙ୍କ ସର୍ବୋଚ ଯନ୍ତ୍ରୀ ତଥା ଶାସନ ସଚୀବ ଥିଲେ। ମୁଁ ଚାରବାଟିଆ ଡିଭିଜନରେ କାମ କରୁଥିଲା ବେଳେ ସେ ମୋର S.E ଥିଲେ। ନୟାଗଡରେ PWD SDO ଥିଲା ବେଳେ ମୁଖ୍ୟ ଯନ୍ତ୍ରୀ ଥିଲେ। ମୋର ନିର୍ବାହୀ ଯନ୍ତ୍ରୀ ପଦକୁ ପ୍ରମୋସନ ବେଳେ ନିର୍ମାଣ ବିଭାଗର ସେକ୍ରେଟେରି ଥିଲେ।

---



ଇଂ. ପଦ୍ମଲୋଚନ ମିଶ୍ର
ଆବିର୍ଭାବ-୨୭।୦୧।୧୯୩୨
ତିରୋଧାନ-୨୦୧୭

ସେ ନିର୍ମାଣ ବିଭାଗରେ କାମ କରି ସହକାରୀ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଲେ। ମୁଁ ୧୯୬୬-୬୯ରେ C.E.N.H ଅଫିସରେ Estimator ଥିଲା ବେଳେ ସେ ଆମ ସାଙ୍ଗରେ କାମ କରୁଥିଲେ।

---



ଇଂ. ଦିଲ୍ଲିପ କୁମାର ପାଳ

ଆବିର୍ଭାବ-୨୪।୦୮।୧୯୪୨
ତିରୋଧାନ-୧୭।୦୫।୨୦୧୭

ସେ ୧୯୬୫ ବ୍ୟାଚର ଇଞ୍ଜିନିୟରିଂ ଗ୍ରାଜୁଏଟ। ସେ ନିର୍ମାଣ ବିଭାଗର S.E ହୋଇ ଅବସର ନେଲେ। ମୁଁ ଫୁଡ କର୍ପୋରେସନ ଅଫ ଇଣ୍ଡିଆକୁ ଡେପୁଟେସନ ଯାଇଥିଲାବେଳେ ସେ ମୋର Asst. Engineer ଥିଲେ। ସେ ବ୍ରଜବିହାରୀ ପରିଡା IASଙ୍କ ଜାମାତା।



ବୀରଲକ୍ଷ୍ମଣ ଦାସ
ଆବିର୍ଭାବ-୧୯୧୧
ତିରୋଧାନ-୧୯୭୭

ରସଲକେଣ୍ଡା (ଭଞ୍ଜନଗର)ର ସେ ସମୟର ଜଲି କ୍ଲବର ସଭାପତି। ସେ ମାଡ୍ରାସ University ଲ କଲେଜରୁ MAB.L ଫାଷ୍ଟ ଗୋଲ୍ଡ଼ ମେଡାଲିଷ୍ଟ ହୋଇଥିଲେ। ତାଙ୍କର ଏତେ ଜମିବାଡି ଧନ ସମ୍ପତ୍ତି ଥିଲାଯେ ତାଙ୍କୁ ଓକିଲାତି କରିବା ଦରକାର ପଡି ନ ଥିଲା। ସେ ବାହା ହୋଇଥିଲେ ମୟୁରଭଞ୍ଜ ମହାରାଜାଙ୍କ ପରେ ସବୁଠୁ ବଡ ଜମିଦାର ମୋରଡାର ସର୍ଦ୍ଦାର ଭାଇମାନେ ରତିକାନ୍ତ ପଟ୍ଟନାୟକ, ଯାମିନିକାନ୍ତ ପଟ୍ଟନାୟକ ଙ୍କ ବଡ ଭଉଣୀଙ୍କୁ। ଯାମିନିକାନ୍ତ ପଟ୍ଟନାୟକ ଯିଏକି ବିଜୁବାବୁଙ୍କର ଅତିପ୍ରିୟ ଥିଲେ ଏବଂ "ସେ ଓଡିଶା ଇଞ୍ଜିନିୟରିଂ କଲେଜର" ପ୍ରତିଷ୍ଠାତା ଓ ଚେୟାରମାନ ଥିଲେ। ଏହାଙ୍କ ବିଷୟରେ ନାଟ୍ୟ ଶିଳ୍ପୀ ନିରଞ୍ଜନ ଶତପଥି ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି।

ବୀର ଲକ୍ଷ୍ମଣ ଦାସ ଭଞ୍ଜନଗର ଅଞ୍ଚଳର ରାଜନୀତିରେ ଜଣେ ବଡପଣ୍ଡା ହିସାବରେ ଗଣାହୋଇଥିଲେ। ସେ ଜଲି କ୍ଲବର ପ୍ରେସିଡେଣ୍ଟ ଓ ମ୍ୟୁନିସିପାଲଟିର ଚେୟାରମାନ ଥିଲେ।



ଗୟା ପ୍ରସାଦ ପଟ୍ଟନାୟକ
ଆବିର୍ଭାବ-୦୧।୦୩।୧୯୪୨
ତିରୋଧାନ-୧୩।୦୮।୨୦୧୫

ମୁଁ ଆଚାର୍ଯ୍ୟବିହାରରେ ରହୁଥିଲା ବେଳେ ତାଙ୍କ ସହିତ ବନ୍ଧୁତା ହୋଇଥିଲା। ସେ ରାଜ୍ୟ ପଣ୍ୟାଗାର ନିଗମରେ କାମ କରୁଥିଲେ। ସେ ଓଡିଆ ପଣ୍ୟ ନିଗମର ଜଣେ

ଅଧିକାରୀ ଥିଲେ । ସେ ଅତ୍ୟନ୍ତ ଭଦ୍ରଲୋକ।



ଉମାଶଙ୍କର ମିଶ୍ର
ଆବିର୍ଭାବ-୧୯୩୭
ତିରୋଧାନ-୨୦୧୭

ସେ ରାଜ ରଣପୁରରେ ଜନ୍ମ। ତାଙ୍କ ବାପା ଚଣ୍ଡେଶ୍ୱର ମିଶ୍ର ରଣପୁର ରାଜାଙ୍କ ଓକିଲ ଥିଲେ। ସେ ପ୍ରଥମେ ଡେପୁଟି କଲେକ୍ଟର ହୋଇ କାର୍ଯ୍ୟ ଆରମ୍ଭ କରିଥିଲେ ଏବଂ ପରେ IAS ପଦ ପାଇଥିଲେ। ଶରଣକୁଳ ପାଖ ବାଉଁଶିଆ ଗ୍ରାମର କାଳି ବନମାଳୀ ଦାସଙ୍କ ସେ ନାତି (ଝିଅଙ୍କ ପୁଅ) ହେବେ। ସେ ଜଣେ ସାହିତ୍ୟିକ। ଅନେକ ବହିର ପ୍ରଣେତା।



ବିବେକାନନ୍ଦ ମହାନ୍ତି
ଆବିର୍ଭାବ-୦୧।୦୯।୧୯୪୧
ତିରୋଧାନ-୨୦୧୬

ବିବେକାନନ୍ଦ ମୋଠୁ ଇଞ୍ଜିନିଅରିଂ ସ୍କୁଲରେ ୨ ବର୍ଷ ତଳ ବ୍ୟାଚରେ ପଢୁଥିଲେ। ସେ କଟକ ର ନୂଆ ସର୍କିଟ ହାଉସର ନିର୍ମାଣ ଦାୟିତ୍ୱରେ ରହି କାମ କରୁଥିଲେ। ମୁଁ ତାଙ୍କଠୁ ଚାର୍ଜ ନେଇ ଥିଲି। ସେଣ୍ଟ୍ରାଲ ସର୍କଲର Estimator ଥିଲେ। ୦୮।୧୦।୨୦୧୭ ରେ ତାଙ୍କ ଶ୍ରାଦ୍ଧ ବାର୍ଷିକି ଉତ୍ସବ ବରମୁଣ୍ଡା କାଳୀ ମନ୍ଦିରରେ ହୋଇଥିଲା।



ବିଶ୍ୱନାଥ ଚୌଧୁରୀ
ଆବିର୍ଭାବ-୩୧।୦୮।୧୯୩୮
ତିରୋଧାନ-୧୩।୧୨।୨୦୧୭

୧୯୯୧ ରେ ନୟାଗଡରେ ରୋଟାରି କ୍ଲବ ନୂଆ ଆରମ୍ଭ ହେଲା। ବିଶ୍ୱନାଥ ବାବୁ ରୋଟାରି ଗଭର୍ଣ୍ଣର ହିସାବରେ ନୟାଗଡ ଆସିଥିଲେ।



ପ୍ରଫେସର ଡ. ଖଗେଶ୍ୱର ମହାପାତ୍ର
ଆବିର୍ଭାବ-୨୭।୧୧।୧୯୩୩
ତିରୋଧାନ-୧୯।୦୭।୨୦୧୭

ଓଡିଆ ସାହିତ୍ୟ ଜଗତର ଏକ ଉଜ୍ଜ୍ୱଳ ନକ୍ଷତ୍ର। ସେ ଅନେକ ବହି ଲେଖିଛନ୍ତି। ସେ ଭାଷା ସାହିତ୍ୟର ଜଣେ ସମୀକ୍ଷକ ଥିଲେ। ଆମ କଲୋନିରେ ରହୁଥିଲେ।

---



ଇଂ. ଜନାର୍ଦ୍ଦନ ତ୍ରିପାଠୀ

ଆବିର୍ଭବା: C. ୧୯୩୫

ତିରୋଧାନ-୧୯।୦୭।୧୯୧୭

ଜନ୍ମ ନିମାପଡା। ଜଳସେଚନ ବିଭାଗରେ ମୁଖ୍ୟଯନ୍ତ୍ରୀ ଥିଲେ। ୧୯୭୪ ରେ ଗୋଟିଏ Institute of Engineers (India) (Orissa centre)ରେ ଗୋଟିଏ ସଭା କରିଥିଲୁ। କୋଣାର୍କ ଉପରେ ସେ ଗୋଟିଏ ଉପାଦେୟ ତଥ୍ୟ ଦେଇଥିଲେ। ସେ ପାଟଣା ୟୁନିଭରସିଟିରେ ଟପ୍ପର ହୋଇଥିଲେ।

---



ଇଂ. ରତି କାନ୍ତ ଦାସ

ଆବିର୍ଭାବ-୧୭।୦୩।୧୯୩୭

ତିରୋଧାନ-୨୨।୦୧।୨୦୧୮

ଘର ବାଣପୁର।ସେ ମୋର ଇଞ୍ଜିନିୟରିଂ Diploma କ୍ଲାସମେଟ। P.H. (Eng) ସହକାରୀ ଯନ୍ତ୍ରୀ ହୋଇ ଅବସର ନେଲେ।

---



ଇଂ. ବ୍ରହ୍ମାନନ୍ଦ ଦାସ

ଆବିର୍ଭାବ-୧୦।୦୮।୧୯୩୭

ତିରୋଧାନ-୦୪।୦୧।୨୦୧୮

ବ୍ରହ୍ମାନନ୍ଦ ମୋର କଟକ ଇଞ୍ଜିନିୟରିଂ ସ୍କୁଲ କ୍ଲାସମେଟ। ସେ ସହକାରୀ ଯନ୍ତ୍ରୀ ହୋଇ ଅବସର ନେଲେ। ସେ ଲେଖିଛିତାର ଆତ୍ମ ଜୀବନୀ "ଜୀବନ ଗାଥା"। ଏହା ଏକ ଉପାଦେୟ ପୁସ୍ତକ। ବହୁତ ତଥ୍ୟ ଅଛି।

---



ଇଂ. ସୋମନାଥ ମିଶ୍ର

ଆବିର୍ଭାବ-୨୮।୦୬।୧୯୩୪

ତିରୋଧାନ-୦୭।୦୧।୨୦୧୮

ଜନ୍ମିତ ସ୍ଥାନ ଆଠଗଡ଼। ନିର୍ମାଣ ବିଭାଗରୁ ସର୍ବୋଚ ଯନ୍ତ୍ରୀ ତଥା ଶାସନ ସଚିବ ପଦରୁ ଅବସର ନେଲେ। ମୁଁ ନୟାଗଡ଼ରେ PWD SDO ଥିଲାବେଳେ ତାଙ୍କୁ ଜାପାନୀବାବୁ ଅନୁରୋଧ କରିଥିଲେ ଭୁବନେଶ୍ୱରରେ ମୋର ନିଯୁକ୍ତି ପାଇଁ। ସେ ମୋତେ B.D.A କୁ ବଦଳି କରିଥିଲେ। ସେ ସମସ୍ତଙ୍କୁ ସାହାଯ୍ୟ କରିବାରେ ଆନନ୍ଦ ପାଉଥିଲେ।

---



ଇଂ. ଲୋକନାଥ ପଣ୍ଡା
ଆବିର୍ଭାବ-୦୨।୦୧।୧୯୩୮
ତିରୋଧାନ-୦୫।୦୭।୨୦୧୮

ଲୋକନାଥ ପାରାଦୀପ ପୋର୍ଟରେ S.E ଥିଲେ। ନିଜଘର ନରସିଂହପୁରରେ। ସେ Diploma ପରେ AMIE କରିଥିଲେ।

---



ନିତ୍ୟାନନ୍ଦ ମହାନ୍ତି
ଆବିର୍ଭାବ-୧୭।୦୮।୨୦୧୮
ତିରୋଧାନ-୧୯୩୧

ନିତ୍ୟାନନ୍ଦ କେନ୍ଦ୍ର ସରକାରର R.M.S ରେ କାମ କରୁଥିଲେ। ମୋର ସାଙ୍ଗ ଇଂ. ରବି ନାରାୟଣ ମହାପାତ୍ରଙ୍କ ଭିଣୋଇ।

---



ଇଂ. ଲଳିତ ମୋହନ ପାତ୍ର
ଆବିର୍ଭାବ-୦୩।୦୨।୧୯୩୬
ତିରୋଧାନ-୧୯।୦୧।୨୦୧୮

ଘର ବଳରାମ ପୁର,ଢେଙ୍କାନାଳ। ନିର୍ମାଣ ବିଭାଗରୁ ଚିଫ ଇଞ୍ଜିନିୟର ପଦରୁ ଅବସର ନେଇଥିଲେ। ମୁଁ ଚାରବାଟିଆ (R&B) Division ରେ SDO ଥିଲାବେଳେ ସେ ନିର୍ବାହୀ ଯନ୍ତ୍ରୀ ଥିଲେ। ଅତ୍ୟନ୍ତ ଭଦ୍ର ଏବଂ କାମିକା ଯନ୍ତ୍ରୀ।

---



ଇଂ. ରବିନାରାୟଣ ମହାପାତ୍ର
ଆବିର୍ଭାବ-୧୯୩୮
ତିରୋଧାନ-୨୭।୦୫।୨୦୧୮

ଘର ଜୟନ୍ତରା, ଯାଜପୁର। ମୋର ଅନ୍ତରଙ୍ଗବନ୍ଧୁ। କଟକ ପ୍ୟାରୀ ମୋହନ ଏକାଡେମିରୁ ୧୯୫୬ ରେ ମାଟ୍ରିକ ପାସ କରିଥିଲେ। ୧୯୬୦ ରେ ମୋ ସାଙ୍ଗରେ କଟକ ଇଞ୍ଜିନିୟରିଂ ସ୍କୁଲରୁ ଡିପ୍ଲୋମା ପାସ କରି ପରେ A.M.I.E ପରୀକ୍ଷା ଦେଇ ପାସ କରିଥିଲେ। ସହକାରୀ ନିର୍ବାହୀ ଯନ୍ତ୍ରୀ ପାଇଁ. ପ୍ରୋମୋସନ ଫାଇଲ ଫେରିବା ପୂର୍ବରୁ ଅବସର ନେଲେ। ସେ B.D.A.ରେ ଅନେକ ବର୍ଷ କାମ କରିଛନ୍ତି।



ଇଂ. ଗୌରାଙ୍ଗ ଚନ୍ଦ୍ର ପଣ୍ଡା

ଆବିର୍ଭାବ-୧୨।୦୯।୧୯୩୬

ତିରୋଧାନ-୧୭।୦୩।୨୦୧୮

ମୋର କଟକ ଇଞ୍ଜିନିୟରିଂ ସ୍କୁଲ ସହପାଠୀ। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ।



ପର୍ଶୁରାମ ବ୍ରହ୍ମା, IAS

ଆବିର୍ଭାବ -୦୮୦୪।୧୯୨୮

ତିରୋଧାନ-୧୩।୦୮।୨୦୧୮

ସେ ପ୍ରମୋସନରେ IAS ପଦକୁ ଯାଇପାରିଥିଲେ। ମୋର ଅଙ୍କଲ ପି. କେଶବ ରାଓ ନାଇଡୁ ଙ୍କ କ୍ଲାସମେଟ। ଏହାଙ୍କ ସାଙ୍ଗରେ ମୁଁ ଅନେକ ଥର ମିଶିଛି।



ଇଂ. ଶୁଶିଲ କୁମାର ପତି

ଆବିର୍ଭାବ-୨୯।୧୧।୧୯୩୯

ତିରୋଧାନ-୦୪।୦୯।୨୦୧୮

୧୯୬୩ରେ ଇଞ୍ଜିନିୟରିଂ କଲେଜ ବ୍ୟାଚ। ମୁଁ C.E. N.H. ଅଫିସରେ ଥିଲାବେଳେ ସେ ସହକାରୀ ଯନ୍ତ୍ରୀ ଥିଲେ।



ରାମାକାନ୍ତ ସାମଲ

ଆବିର୍ଭାବ-୨୭।୧୦।୧୯୩୭

ତିରୋଧାନ-୧୨।୧୨।୨୦୧୮

ମୁଁ C.E N.H ଅଫିସରେ କାମ

କରୁଥିଲାବେଳେ ସେ ଅଫିସର ସହକାରୀ ଥିଲେ।



**ବଂଶୀଧର ସାହୁ**
**ଆବିର୍ଭାବ-**
**ତିରୋଧାନ-୨୧।୧୦।୨୦୧୮**

ଆଏ ୧୯୮୦ରୁ ୧୯୮୫ ମସିହାରେ ନୟାଗଡ ବିଧାୟକ ଥିଲେ। ସେ ଅନେକ ବହି ଲେଖିଛନ୍ତି। ଜନ୍ମସ୍ଥାନ ଇଟାମାଟିରେ ଏକ କଲେଜ ପ୍ରତିଷ୍ଠା କରିଛନ୍ତି।



**ଅତୁଲକୃଷ୍ଣ ପଟ୍ଟନାୟକ**
**ଆବିର୍ଭାବ-୧୯୪୦**
**ତିରୋଧାନ-୨୦୧୯**

ସେ ଜଣେ OAS ଅଫିସର। ମୋର ବଡଭାଇ ମଦନମୋହନ ଦୋରାଙ୍କ ବଂଧୁ। ସକାଳେ ତାଙ୍କ ସାଙ୍ଗରେ ଦେଖା ହୁଏ ପ୍ରାତଃ ଭ୍ରମଣରେ।



**ଇଂ. କେଦାର ନାଥ ମିଶ୍ର**
**ଆବିର୍ଭାବ-୨୫।୧୧।୧୯୪୦**
**ତିରୋଧାନ-୨୬।୦୨।୨୦୧୮**

ସେ କଟକ ଇଞ୍ଜିନିୟରିଂ ସ୍କୁଲରୁ ୧୯୫୯ ରେ Topper ହୋଇ ପାସ କରିଥିଲେ। ତିନିଟା ଯାକ ଇଞ୍ଜିନିୟରିଂ ସ୍କୁଲରେ Topper ହେବାରୁ ସେ ଗ୍ୟାରେଣ୍ଟେଡ ପୋଷ୍ଟ (G.P) ପାଇଥିଲେ। ତାହା ଅର୍ଥ ମୂଳରୁ ସ୍ଥାୟୀ ଚାକିରି। ସେ AMIE ପାସ କରି ନିର୍ମାଣ ବିଭାଗରେS.E ପଦ ପର୍ଯ୍ୟନ୍ତ ଯାଇଥିଲେ। ମୁଁ ରହୁଥିବା ବରମୁଣ୍ଡା ହାଉସିଂ ବୋର୍ଡ ଘର ୧୯୭୮ ରେ ପାଇଥିଲି। ସେ ଏଠି S.D.O ଥିଲେ। ମୁଁ ଘର ରଖିବି କି ନାହିଁ ଭାବିବାରୁ ସେ କହିଲେ "ଏ ଘର କାମ ଭଲ ହୋଇଛି ,ଛାଡନ୍ତୁନି"। ତାଙ୍କ କଥାରେ ମୁଁ ଘର ରଖିଲି। ଏବେ ଭାବୁଛି ମୁଁ ଏ ଘର ରଖିନଥିଲେ ମୋତେ ଭୁବନେଶ୍ୱରରେ ବାସ ମିଳି ନ ଥାନ୍ତା। ଏଥିପାଇଂ. କେଦାର ବାବୁଙ୍କ ପାଖରେ ଚିରକୃତଜ୍ଞ।



ପ୍ରଫେସର ଡାକ୍ତର ସନ୍ତୋଷ କୁମାର ହଜାରୀ
ଆବିର୍ଭାବ-୧୧।୦୧।୦୯୪୪
ତିରୋଧାନ-୧୭।୦୩।୨୦୧୯

ଜନ୍ମସ୍ଥାନ କେଶରପୁର, ନୟାଗଡ଼। ପ୍ରସିଦ୍ଧ ଆନାଟୋମିକ୍ ପ୍ରଫେସର ଡକ୍ଟର ସତ୍ୟଜିତ ହଜାରିଙ୍କ ପୁତୁରା। ସନ୍ତୋଷ ବୁର୍ଲା କଲେଜରେ ଅନାଟେମି ପ୍ରଫେସର ଥାଇ ବହୁତ ନାଁ କରିଥିଲେ। ତାଙ୍କର ଜନୈକ ଡାକ୍ତର ଛାତ୍ର ଡକ୍ଟର ଅରବିନ୍ଦ ମହାନ୍ତି (ଶିଶୁ ବିଶେଷଜ୍ଞ) ଡାକ୍ତର ହଜାରୀ ଙ୍କ ଶିକ୍ଷାଦାନ ଉପରେ ଖବର କାଗଜରେ ଏକ ଲେଖା ପ୍ରକାଶ କରିଥିଲେ।



ଇଂ. ବେଣୁଧର ମିଶ୍ର
ଆବିର୍ଭାବ-୨୬।୦୧।୧୯୩୦
ତିରୋଧାନ-୧୮।୦୮।୨୦୧୮

ଜନ୍ମ ଆଠଗଡ । ସେ ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ। ମୁଁ ୧୯୬୨ ରେ C.E. N.H ଅଫିସରେ Estimator ଥିଲାବେଳେ ସେ ସେଠିEstimator ଥିଲେ।



ସୁଲେଖକ ବିଷ୍ଣୁଚରଣ ମହାନ୍ତି
ଆବିର୍ଭାବ-୨୫।୧୧।୧୯୨୦
ତିରୋଧାନ-୧୦।୦୪।୨୦୧୮

ସେ OAS ଅଫିସର ଥିଲେ। ସେକ୍ରେଟେରିଏଟ୍ରୁ ଜଏଣ୍ଟ ସେକ୍ରେଟେରି ହୋଇ ଅବସର ନେଲେ ସେ ଅନେକ ଗୁଡିଏ ବହି ଲେଖିଛନ୍ତି। ସେଥିରେ ନିଜର ଅନୁଭୂତି ସମ୍ପନ୍ନ ବହି ମଧ୍ୟ ଅଛି। ମୁଁ ତାଙ୍କ ଠାରୁ ବହି ଲେଖିବା ପାଇଁ ବହୁତ ଉପାଦେୟ ତଥ୍ୟ ପାଇଛି। ନିଜର ସଚ୍ଚୋଟ ପଣ ପାଇଂ. ବହୁତ ଅତ୍ୟାଚାରିତ ହୋଇଅଛନ୍ତି। ସେ ଲେଖିଛନ୍ତି ଜଣେ ଚିଫ ସେକ୍ରେଟେରିଙ୍କ ଯୋଗୁଁ ସେ I.A.S. ପଦକୁ ପ୍ରାପ୍ତ ହେଲେନି।



ବାବୁଲାଲ ଅଗ୍ରୱାଲ IAS

ଆବିର୍ଭାବ-୦୨।୦୭।୧୯୩୨
ତିରୋଧାନ-୦୩।୦୪।୨୦୧୯

ମୋ ବଡ ଭାଇ ତିଗିରିଆର ତହସିଲଦାର ଥିଲାବେଳେ ସେ ଆଠଗଡର S.D.O ଥିଲେ। ଭୁବନେଶ୍ୱରସ୍ଥ ଆଇ.ଆର୍.ସି ଭିଲେଜ, ଏଜ୍ କେୟାର ଆସୋସିଏଟ୍ ଅଫିସରେ ମୋର ତାଙ୍କ ସଙ୍ଗେ ଦେଖା ହୁଏ।



ନାଟ୍ୟକାର ରାମ ଚନ୍ଦ୍ର ମିଶ୍ର
ଆବିର୍ଭାବ-୧୨।୧୦।୧୯୨୦
ତିରୋଧାନ-୨୬।୦୬।୧୯୯୨

ଜନ୍ମ ଦଶପଲ୍ଲାରେ। ସେ ଓକିଲାତି କରୁଥିଲେ। ୧୮୫୨ ରେ ଆମ ଗାଁରେ ହୋଇ ଥିଲା ଘର ସଂସାର ଡ୍ରାମା, ତାହା ଏହି ଲେଖକଙ୍କ ଦ୍ୱାରା ରଚିତ।



ସୁଧାଂଶୁ ଭୂଷଣ ମିଶ୍ର IAS
ଆବିର୍ଭାବ-୧୫।୦୭।୧୯୪୧
ତିରୋଧାନ-୧୧।୦୮।୨୦୧୬

ସୁଧାଂଶୁ ଭୂଷଣ ସତ୍ୟବାଦୀ ସ୍କୁଲ ଛାତ୍ର ଲିଙ୍ଗରାଜ ମିଶ୍ରଙ୍କ ପୁତ୍ର। ଲିଙ୍ଗରାଜ କେବେ ସତ୍ୟ ପଥରୁ ଟଳି ନାହାନ୍ତି। ସୁଲେଖକ ବିଷ୍ଣୁ ଚରଣ ମହାନ୍ତି ତାଙ୍କ ରଚିତ ପୁସ୍ତକ ୧୯୮୯ ରେ "ରୋମନ୍ଥନ ଏକ ବ୍ୟର୍ଥ ଅତୀତର" ଲିଙ୍ଗରାଜ ମିଶ୍ରଙ୍କ ନାଁରେ ଉତ୍ସର୍ଗ କରିଛନ୍ତି। ସୁଧାଂଶୁ ଭୂଷଣ ରାଜ୍ୟ ସରକାରଙ୍କ ଚିଫ ସେକ୍ରେଟେରୀ ଥିଲେ। ଖବର ଖାଗଜରେ ମୋ Thesaurus of Events and Dates ବହି ଦେଖି ମୋତେ ବଧାଇ ଜଣାଇ ଥିଲେ।



ଇଂ. କୁଞ୍ଜ ବିହାରୀ ତ୍ରିପାଠୀ
ଆବିର୍ଭାବ-୦୯।୦୫।୧୯୩୬
ତିରୋଧାନ-୨୪।୦୮।୨୦୧୫

ସେ ବୁର୍ଲା ଇଞ୍ଜିନିଅରିଂ କଲେଜରୁ ୧୯୬୧ ରେ ପାସ କରିଥିଲେ। ସେ ଟ୍ରେନିଂ ନେଉଥିଲାବେଳେ ମୋର ଚିହ୍ନା ପରିଚୟ ଥିଲା।



ସୁଧାଂଶୁ ମୋହନ ପଟ୍ଟନାୟକ, I.A.S
ଆବିର୍ଭାବ-୧୯୨୬
ତିରୋଧାନ-୨୦୧୬

ପ୍ରଥମ ଓଡିଆ ମୁଖ୍ୟ ଶାସନ ସଚିବ। ସେ ଧଉଳି ପାହାଡର କବି ପଦ୍ମଚରଣ ପଟ୍ଟନାୟକଙ୍କ ସାନ ଭାଇ ମଦନ ମୋହନ ପଟ୍ଟନାୟକଙ୍କ ପୁତ୍ର। ମଦନ ମୋହନ ମଧ୍ୟ ଅନେକ କବିତା, ଗଦ୍ୟ ସାହିତ୍ୟର ରଚୟିତା। ସbଧାଂଶୁ ମୋହନ ମୁଖ୍ୟ ଶାସନ ସଚିବ ଥିବାବେଳେ R.E.O ସଂସ୍ଥାର ବିଲୋପ ଘଟିଲା।

---



କୈଳାସ ପଟ୍ଟନାୟକ
ଆବିର୍ଭାବ-୦୧।୧୦।୧୯୪୦
ତିରୋଧାନ-୦୫।୦୧।୨୦୧୭

ନୟାପଲ୍ଲୀରେ ରହି ଏଜ୍ କେୟାର ଆସୋସିଏଟ୍ ସଂସ୍ଥାର ଜଣେ ସକ୍ରିୟ ସଭ୍ୟ। ଆମେ ସେଠି ମିଶୁ।

---



ଆଡଭୋକେଟ ସନାତନ ମିଶ୍ର
ଆବିର୍ଭାବ-୩୦।୦୧।୧୯୨୬
ତିରୋଧାନ-୨୧।୦୧।୨୦୧୭

ସେ ଖଣ୍ଡପଡାର ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ପୁତ୍ର। ଠାକୁରଙ୍କ ଉପରେ ବହି ଲେଖିଅଛନ୍ତି। ସାମ୍ବାଦିକ ଚିତ୍ତରଞ୍ଜନ ମିଶ୍ରଙ୍କ ମାମୁଁ ଅଟନ୍ତି।

---



ଧନଞ୍ଜୟ ପଟ୍ଟନାୟକ
ଆବିର୍ଭାବ-୦୪।୦୪।୧୯୩୬
ତିରୋଧାନ-୨୮।୦୨।୨୦୧୭

ରାଜ୍ୟ ସରକାରଙ୍କ ସେକ୍ରେଟେରିଏଟରେ ଅଣ୍ଡର ସେକ୍ରେଟେରୀ ଥିଲେ। ସେ ମୋ ବଡ ଭାଇଙ୍କ ସାଙ୍ଗ। ତାଙ୍କ ସାଙ୍ଗରେ ଭେଟ ହୁଏ ଭାଇଙ୍କ ଘରେ।

---



ଗଙ୍ଗାଧର ନନ୍ଦ

ଆବିର୍ଭାବ-୦୧।୦୭।୧୯୨୮

ତିରୋଧାନ-୨୦।୧୧।୨୦୧୭

A.G ଅଫିସରେ ଆକାଉଣ୍ଟସ ଅଫିସରେ ଥିଲେ। ତାଙ୍କ ଜଣେ ପୁଅ ସହିଦନଗରରେ ଦାନ୍ତ ଡାକ୍ତର ଅଛନ୍ତି। ନନ୍ଦଙ୍କ ସହିତ ମୋର ବ୍ୟକ୍ତିଗତ ବନ୍ଧୁତା ଅଛି।



ଇଂ. ହୃଦାନନ୍ଦ ମିଶ୍ର

ଆବିର୍ଭାବ-୧୦।୦୪।୧୯୪୦

ତିରୋଧାନ-୦୮।୦୧।୨୦୧୮

ବୁର୍ଲା ଇଞ୍ଜିନିଅରିଂ କଲେଜର ୧୯୬୪ ବ୍ୟାଚ। ତାଙ୍କ ପିତା ଅଭିମନ୍ୟୁ ମିଶ୍ର N.H Circle-IIରେ ହେଡ଼ ଆସିଷ୍ଟାଣ୍ଟ ଥିଲେ। ମୁଁ ସେତେବେଳେ ଏହି ସର୍କଲ ରେ estimator ଥିଲି। S.E ଥିଲେ ଇଂ. ଦିବ୍ୟସିଂହ ମିଶ୍ର। ହୃଦାନନ୍ଦଙ୍କ ଜଣେ ଭାଇ ଧର୍ମାନନ୍ଦ ମିଶ୍ର L.I.Cରେ ଜଣେ ଅଫିସର ଥିଲେ।



ହିତକର ମହାପାତ୍ର

ଆବିର୍ଭାବ-୨୫।୦୭।୧୯୪୬

ତିରୋଧାନ-୨୬।୦୨।୨୦୧୮

ସେ ଭୁବନେଶ୍ୱରରେ ରିଅଲ ଇଷ୍ଟେଟ ବ୍ୟବସାୟ କରୁଥିଲେ। ଶରଣକୁଳ ବଡପଣ୍ଡା ପରିବାରର ଜୁଆଇଂ. ଏବଂ ମୋର ଶିକ୍ଷକ ଦାମୋଦର ମହାପାତ୍ରଙ୍କ (ଶରଣକୁଳ) ସନ୍ତୁ।



ପ୍ରଭଞ୍ଜନ ପରିଡା

ଆବିର୍ଭାବ-୧୩।୦୩।୧୯୩୯

ତିରୋଧାନ-୧୭।୦୭।୨୦୧୮

ପ୍ରଭଞ୍ଜନ ସରକାରଙ୍କର ସଂସ୍କୃତି ବିଭାଗରେ କାମ କରୁଥିଲେ।

ସେ ଭୁବନେଶ୍ୱରର ଜଣା ଶୁଣା ହୋମିୟପାଥିକ ଇନ୍ଦୁ ଭୂଷଣ ରାୟଙ୍କ ଜାମାତା। ୯ ନମ୍ବର ୟୁନିଟରେ ଚିହ୍ନା ପରିଚୟ।

---



ଇଂ. ଗୋବିନ୍ଦ ଚନ୍ଦ୍ର ତେଜ
ଆବିର୍ଭାବ-୨୫।୦୫।୧୯୨୮
ତିରୋଧାନ-୧୮।୦୮।୨୦୧୬

ସେ P.W.D S.D.O ସାଙ୍ଗକୁ ଥିଏଟର ଓ ସିନେମାରେ ଭାଗ ନେଉଥିଲେ। ପରେ ଚାକିରି ଛାଡି ସିନେମାରେ ଲାଗିଲେ। କଲେଜ ଅଧ୍ୟାପିକା ଓ କଳାକାର ସୁଷମା ତେଜ ତାଙ୍କ ଧର୍ମ ପତ୍ନୀ।

---



ରବିରତ୍ନ ଦାସ (IAS)
ଆବିର୍ଭାବ-୧୭।୦୪।୧୯୩୬
ତିରୋଧାନ-୧୩।୧୨।୨୦୧୮

ସେ କଟକ ଇଞ୍ଜିନିଅରିଂ ସ୍କୁଲରେ ନାମ ଲେଖାଇ ପଢିଲେ ୧୯୫୬ ରେ। ମାତ୍ର ପ୍ରଥମ ବର୍ଷର କିଛି ମାସ ପରେ ଇଞ୍ଜିନିଅରିଂ ପଢା ଛାଡିଲେ। ତା' ପରେ ଆର୍ଟସ ପଢ଼ି ଓ.ଏ.ଏସ. ପାଇଲେ। ବିଭାଗରେ ତାଙ୍କର ବହୁତ ସୁନାମ ଅଛି। ସେ ସାଙ୍ଗ ପ୍ରଶାନ୍ତ କୁମାର ରଥଙ୍କ ବନ୍ଧୁ ଥିଲେ।

---



ନଟବର ସାହୁ
ଆବିର୍ଭାବ: ୧୩।୦୩।୧୯୪୫
ତିରୋଧାନ: ୦୭।୦୨।୨୦୨୦

ଶିଶୁ ସାହିତ୍ୟିକ। ରାଷ୍ଟ୍ରପତି ପଦକ ପୁରସ୍କାର ପ୍ରାପ୍ତ ଶିକ୍ଷକ। ସେ ଆମ ହାସ୍ୟ କ୍ଲବର ସଦସ୍ୟ ଥିଲେ। ଆମ ବରମୁଣ୍ଡାସ୍ଥିତ ସିଟିଜେନ କାଉନସିଲ ଆସୋସିଏସନର ସକ୍ରିୟସଭ୍ୟ। ଆମ କଲୋନିରେ ରହୁଛନ୍ତି। ନିଜର ଆତ୍ମଜୀବନୀ ଲେଖିଛନ୍ତି।

---



ଇଂ. ବିଶ୍ୱନାଥ ପାତ୍ରୀ

ଆବିର୍ଭାବ-୩୦।୦୧।୧୯୩୯
ତିରୋଧାନ-୧୪।୦୫।୨୦୨୦

N.H Division ଭୁବନେଶ୍ୱରରେ ସେ ମୋର ସହକର୍ମୀ ଥିଲେ। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ତାଙ୍କ ନିଜ ଘର ଗଞ୍ଜାମ ଜିଲ୍ଲାରେ। ସେ I.R.C.village ରେ ରହୁଥିଲେ।

---



ଇଂ. ବିଜୟାନନ୍ଦ ତ୍ରିପାଠୀ
ଆବିର୍ଭାବ-୩୧।୦୩।୧୯୨୫
ତିରୋଧାନ-୦୪।୦୨।୨୦୨୦

ଜଳ ସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ ଥିଲେ। ସେ ପ୍ରଫେସର ଡକ୍ଟର ବିଭୁତି ତ୍ରିପାଠୀଙ୍କ ସାନ ଭାଇ। ବିଜୟାନନ୍ଦ ବାବୁ ଆଦର୍ଶ ବିବାହ କରିଥିଲେ ଉତ୍କଳର ବିଦ୍ୟାସାଗର ବୈରାଗୀ ମିଶ୍ରଙ୍କ ନିର୍ଦ୍ଦେଶରେ। ସେ ବାହାଘରରେ ମାତ୍ର ଟ୧୦ଙ୍କାଖରଚ ହୋଇଥିଲା। ସେ ଇଞ୍ଜିନିୟରିଂ ସର୍ଭିସ ଆସୋସିଏସନର ସଭାପତି ଥିଲେ। ତାଙ୍କର ଦାବୀରେ ନୀଳମଣି ରାଉତରାୟଙ୍କ ସରକାର R.E.O ଉପରେ ଏକ କମିଟି ଗଠନ କରିଥିଲେ। ଏହି କମିଟି ରିପୋର୍ଟ ଫଳରେ R.E.O ଭାଙ୍ଗିଥିଲା।

---



ଇଂ. ସର୍ବେଶ୍ୱର ଦାସ
ଆବିର୍ଭାବ-୧୯୪୨
ତିରୋଧାନ-୦୨।୦୭।୨୦୨୦

ଘର ନରସିଂହପୁର। ଜଳସେଚନ ବିଭାଗରେ S.E. ଥିଲେ। ମୋର ସାଙ୍ଗ ଇଂ. ସୂର୍ଯ୍ୟନାରାୟଣ ଦାସ ନିର୍ବାହୀ ଯନ୍ତ୍ରୀ (P.H.)ଙ୍କର ସାନଭାଇ।

---



ଦୟାମୟୀ ରଥ
ଆବିର୍ଭାବ-୦୫।୧୧।୧୯୪୬
ତିରୋଧାନ-୨୬।୦୬।୨୦୧୯

ଦୟାମୟୀ ମୋର ଇଞ୍ଜିନିଅରିଂ ସ୍କୁଲ ଲେକଚରର ଗଣେଶ୍ୱର ନନ୍ଦଙ୍କ କନ୍ୟା ଏବଂ ବନ୍ଧୁ ଇଂ. ପୂର୍ଣଚନ୍ଦ୍ର ରଥଙ୍କ ଧର୍ମପତ୍ନୀ। ପୂର୍ଣ୍ଣଚନ୍ଦ୍ର ପୁରୁଣା ଭୁବନଶ୍ୱରରେ ରହୁଥିଲେ।

---



ଇଂ. ଲକ୍ଷ୍ମୀ ନାରାୟଣ ବାରିକ
ଆବିର୍ଭାବ-୦୧।୦୭।୧୯୩୩
ତିରୋଧାନ-୧୩।୦୬।୨୦୨୦

ଇଡକୋର ପ୍ରାକ୍ତନ M.D.। ମୋର ୧୯୭୬ ମସିହାରେ Bhubaneswar N.H. Dvn. ରେ ନିର୍ବାହୀ ଯନ୍ତ୍ରୀ ଥିଲେ। ସେହି ଡିଭିଜନରୁ ବଦଳି ହୋଇ ଇଡକୋକୁ ଡେପୁଟେସନରେ ଗଲେ ଯେ ପୁରା ଚାକିରି ଶେଷ ପର୍ଯ୍ୟନ୍ତ ସେଠି ରହିଲେ। ଅତ୍ୟନ୍ତ ଭଦ୍ର ଏବଂ ସାହାଯ୍ୟକାରୀ। ସବୁ ଭଲ ଗୁଣର ସେ ଅଧିକାରୀ। ତାଙ୍କ ନିଜ ଘର ଭଣ୍ଡାରିପୋଖରୀ। ସୁନାବେଡ଼ା ସ୍ଥିତ ଏରୋଇଞ୍ଜିନ (MIG) ସଂସ୍ଥାର ସବୁ କୋଠାବାଡି, factory କୋଠାର ଡିଜାଇନ କରିଥିଲେ।

---



ଏମ. ବାଲାୟା
ଆବିର୍ଭାବ-୦୧।୦୬।୧୯୩୫
ତିରୋଧାନ-୧୩।୦୪।୨୦୨୦

ତାଙ୍କର ଜନ୍ମ ଗୁଣୁପୁରରେ। ମେକାନିକାଲ Dvn. ରେ Steno ଥିଲେ। ଆମର ପାରିବାରିକ ବନ୍ଧୁ। ଫକିର ମୋହନ ନଗରରେ (ବରମୁଣ୍ଡା H.Bcolony) ରହୁଥିଲେ।

---



ପ୍ରଫେସର ଡକ୍ଟର ତ୍ରିଲୋଚନ ଶତପଥି
ଆବିର୍ଭାବ-୩୧।୦୧।୧୯୩୮
ତିରୋଧାନ-୩୧।୦୫।୨୦୧୯

ଘର ବାନ୍ଦୋଳ। ଅର୍ଥନୀତିର ଅଧ୍ୟାପକ ଥିଲେ। ତାଙ୍କ ଭଉଣୀ ଅନ୍ନପୂର୍ଣ୍ଣା ଶତପଥି ମଧ୍ୟ ଅର୍ଥନୀତିର ଅଧ୍ୟାପକ ଥିଲେ। ମୋର ସ୍ତ୍ରୀ ଲାବଣ୍ୟ କଟକ ମେଡିକାଲରେ ଚିକିତ୍ସିତ ହେଉଥିଲା ବେଳେ ତାଙ୍କ ଭଉଣୀ ଅନ୍ନପୂର୍ଣ୍ଣା ପାଖ ବେଡରେ ଚିକିତ୍ସିତ ହେଉଥିଲେ।

---



ଉତ୍କଳର ବିଦ୍ୟାସାଗର ବୈରାଗୀ ମିଶ୍ର

ଆବିର୍ଭାବ-୧୬।୧୨।୧୮୮୫
ତିରୋଧାନ-୧୯।୦୨।୧୯୨୨

ଗ୍ରାମ ମୂଳ ବସନ୍ତ। ସମାଜ ସଂସ୍କାରକ। ବହୁତ ବିବରା କନ୍ୟାଙ୍କୁ ବିବାହ କରାଇଥିଲେ। ବ୍ରାହ୍ମଣ ହୋଇ ପଇତା ପିନ୍ଧୁ ନଥିଲେ। ଗୀତା ଉପରେ ଏକ ଭାଷ୍ୟ ଲେଖିଛନ୍ତି। ତାହା ଅନ୍ୟ ଭାଷ୍ୟ ଠାରୁ ନିଆରା। ସେ ୧୯୪୯ ରେ ବିଶ୍ୱ କଲ୍ୟାଣ ସମିତି ନାମକ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ।

---



ଇଂ. ଅରବିନ୍ଦ ପଟ୍ଟନାୟକ
ଆବିର୍ଭାବ-୦୩।୦୪।୧୯୪୬
ତିରୋଧାନ-୦୩।୦୭।୨୦୨୦

ନିର୍ମାଣ ବିଭାଗର ମୁଖ୍ୟ ଯନ୍ତ୍ରୀ। ସେ (R&B) ଅଫିସରେ ସହକାରୀ ଯନ୍ତ୍ରୀ ଥିଲାବେଳେ ଚିହ୍ନା ପରିଚୟ।

---



ପ୍ରିୟବ୍ରତ ପଟ୍ଟନାୟକ IAS
ଆବିର୍ଭାବ-୧୭।୦୧।୧୯୫୩
ତିରୋଧାନ-୨୧।୦୭।୨୦୨୦

ପ୍ରିୟବ୍ରତ ଜଣେ କାମିକା ଅଫିସର। ସରକାରଙ୍କ ବହୁ ପଦବୀରେ କାମ କରିଛନ୍ତି। ଆମ ଗାଁ ପାଖ ସାନଗୋରଡ଼ାରେ ଘର। ଶିକ୍ଷା ବିଭାଗର ଜଏଣ୍ଟ D.P.I ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କ ପୁତ୍ର। ପ୍ରାକ୍ତନ ଭାଇସଚାନସଲର ଏବଂ ଜୀବ ବିଜ୍ଞାନୀ ପ୍ରଫେସର ପ୍ରିୟଂବଦା ହେଜମାଦୀଙ୍କ ବଡ ଭଉଣୀଙ୍କ ପୁଅ।

---



ଇଂ. ପିତାମ୍ବର ଧଳ
ଆବିର୍ଭାବ-୨୪।୦୩।୧୯୩୫
ତିରୋଧାନ-୦୧।୦୮।୨୦୨୦

ସେ S.E ହୋଇ ଅବସର ନେଲେ। ମୁଁ ଫୁଲବାଣି (R&B) Division A.E.E ଥିଲାବେଳେ (୧୯୯୪) ସେ ବ୍ରହ୍ମପୁର ସର୍କଲ S.E ଥିଲେ।

---



ଶୈଳବାଳା ମିଶ୍ର

ତିରୋଧାନ-୦୧।୦୮।୨୦୨୦

ଇଂ. କେଦାର ନାଥ ମିଶ୍ରଙ୍କ ଧର୍ମ ପତ୍ନୀ। କେଦାରବାବୁ ୧୯୫୯ରେ ସମସ୍ତ ଇଞ୍ଜିନିୟରିଂ ସ୍କୁଲରେ ଟପ୍ପର ହୋଇଥିଲେ।

---



ପୁଷ୍ପା ଦାସ

ଆବିର୍ଭାବ-୨୪।୦୪।୧୯୫୬

ତିରୋଧାନ-୦୩।୦୮।୨୦୨୦

ସେ ମୋର ବନ୍ଧୁ ବିଷ୍ଣୁ ପ୍ରସାଦ ଦାସଙ୍କ ଧର୍ମ ପତ୍ନୀ। ୧୯୯୦ ରେ ବିଷ୍ଣୁନୟାଗଡ PWD sub. Division ରେ କ୍ୟାସିୟର ଥିଲେ। ପୁଷ୍ପା ମୁଖ୍ୟ ମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଭାଣିଜୀ। ଅତ୍ୟନ୍ତ ସ୍ନେହଶିଳା ଅଟନ୍ତି।

---



ପ୍ରଫେସର ଡକ୍ଟର ଅତୁଲ ଚନ୍ଦ୍ର ପ୍ରଧାନ

ଆବିର୍ଭାବ-୦୨।୦୯।୧୯୪୫

ତିରୋଧାନ-୧୮।୦୮।୨୦୨୦

ସେ ବାଣିବିହାରରେ ଇତିହାସ ଅଧ୍ୟାପକ ଥିଲେ। ସେ ଅନେକ ଗୁଡିଏ ଇତିହାସ ବହି ଏବଂ ଅନ୍ୟାନ୍ୟ ଉପାଦେଯ ପୁସ୍ତକ ରଚନା କରିଛନ୍ତି। ମୋର ପ୍ରଥମ ସଂକଳିତ ବହି "Thesaurus of Events and dates of Orissa" ବହିରେ ମୁଖବନ୍ଧ ଲେଖିଛନ୍ତି। ସେ ମୋର ବ୍ୟକ୍ତିଗତ ବନ୍ଧୁ ଥିଲେ। ସେ ଆମ କଲୋନି (ଫକିର ମୋହନ) ନଗରରେ ରହୁଥିଲେ।

---



ଇଂ. ସନ୍ନ୍ୟାସୀ ଚରଣ ପରିଜା

ଆବିର୍ଭାବ-୦୬।୧୨।୧୯୪୪

ତିରୋଧାନ-୨୦।୦୨।୨୦୨୧

ସେ ଇଞ୍ଜିନିଅରିଂ ଡିପ୍ଲୋମା ଆସୋସିଏସନର ଜଣେ ସକ୍ରିୟ କର୍ମୀ ଥିଲେ। ସହକାରୀ ଯନ୍ତ୍ରୀ ହୋଇ ଅବସର ନେଲେ।

---



ଇଂ. ବିଚିତ୍ରାନନ୍ଦ ମୁଦୁଲି

ଆବିର୍ଭାବ-୩୦।୧୨।୧୯୪୨
ତିରୋଧାନ-୨୦୨୦
ଜଳ୍ପ ଆଠଗଡ଼। ନିର୍ମାଣ ବିଭାଗରେ ଚିଫ ଇଞ୍ଜିନିଅର ପଦରୁ ଅବସର ନେଇଥିଲେ। ନୟାଗଡ ସୁଗାର factory ରେ ପ୍ରୋଜେକ୍ଟର ମାନେଜର ଥିଲେ।

---



ଇଂ. ଏକାଦଶୀ ସାହୁ
ଆବିର୍ଭାବ-୧୮।୦୨।୧୯୪୦
ତିରୋଧାନ-୨୩।୦୮।୨୦୨୦
ବୁର୍ଲାର ୧୯୬୩ ଇଞ୍ଜିନିଅରିଂ କଲେଜ ବ୍ୟାଚ। ସେ C.E.N.H ଅଫିସରେA.E. ଥିଲାବେଳେ ମୁଁ Estimator ଥିଲି। ସେ ମୋର ପ୍ରଥମ S.D.O କାମେଶ୍ୱର ସାହୁଙ୍କ ଜାମାତା।

---



ଇଂ. ପରୀକ୍ଷିତ ତ୍ରିପାଠୀ
ଆବିର୍ଭାବ-୬/୧/୧୯୩୭
ତିରୋଧାନ-୨୦୨୧

ସେ କଟକ ଇଞ୍ଜିନିଅରିଂ ସ୍କୁଲର ୧୯୫୮ ବ୍ୟାଚ ଚିଫ ଇଞ୍ଜିନିଅର (R&B) ଅଫିସରେ ରହି AMIE ପାସ କରିଥିଲେ। P.S.C ଦ୍ୱାରା ବଛା ହୋଇ ସେ ଜଳ ସେଚନ ବିଭାଗରେ କାମ କରି S.E ପଦରୁ ଅବସର ନେଲେ। ସେ ହିଁ ମୋତେ C.E (R&B) ଅଫିସକୁ ନ ଆସିବାକୁ ଉପଦେଶ ଦେଇଥିଲେ, କାରଣ ଏଠାରେ ଡ୍ରଇଂ. ବ୍ରାଞ୍ଚର ସୁପରିଟେଣ୍ଡେଣ୍ଟଙ୍କ ବହୁତ ପ୍ରକୋପ।

---



ଇଂ. ନବ କିଶୋର ରଥ
ଆବିର୍ଭାବ-
ତିରୋଧାନ-୨୦।୧୦।୨୦୨୦
ପୂର୍ତ୍ତ ବିଭାଗରେ ସର୍ବୋଚ୍ଚ ଯନ୍ତ୍ରୀ ତଥା ଶାସନ ସଚୀବ ଥିଲେ। ସେ ସେକ୍ରେଟେରି ଥିଲା ବେଳେ ମୁଁ ଫୁଲବାଣି ଡିଭିଜନର ନିର୍ବାହୀ ଯନ୍ତ୍ରୀ ଥିଲି। ଚିଫ ଇଞ୍ଜିନିଅର (ମେକାନିକାଲ) ଥିଲେ ତାଙ୍କର ବଡ ଭାଇ ଗୋପବନ୍ଧୁ ରଥ। ମୁଁ କଟକ ଇଞ୍ଜିନିଅରିଂ ସ୍କୁଲରେ ପଢିଲାବେଳେ ଗୋପବନ୍ଧୁ ରଥ ଲେକଚରର ଥିଲେ।

---



ଇଂ. ପ୍ରତାପ ଚନ୍ଦ୍ର ପଟ୍ଟନାୟକ
ଆବିର୍ଭାବ-୦୪।୧୦।୧୯୪୦
ତିରୋଧାନ-୧୧।୧୦।୨୦୨୦

ଘର ଛଣିପୁର, ସାଲେପୁର। ନିର୍ବାହୀ ବିଭାଗରେ S.E ହୋଇ ଅବସର ନେଲେ। ନୟାଗଡର ଅନେକ ବଡବଡ ବ୍ରିଜ ତାଙ୍କ ଦ୍ୱାରା ନିର୍ମିତ ହୋଇଛି। ସେ ଜଣେ କାମିକା ଇଞ୍ଜିନିଅର। ମୁଁ ନୟାଗଡ (R+B) Sub-Divisionରେ ଯୋଗ ଦେବା ଆଗରୁ ସେ ସେଠି S.D.O ଥିଲେ।

---



ଇଂ. ଜଗନ୍ନାଥ ତ୍ରିପାଠୀ
ଆବିର୍ଭାବ-୦୧।୦୭।୧୯୩୬
ତିରୋଧାନ-୦୨।୦୨।୨୦୨୦

ସେ B.H.U ରୁ Topper ହୋଇ ଇଞ୍ଜିନିଅରିଂ ପାସ କରିଥିଲେ। ଜଳସେଚନ ବିଭାଗର ମୁଖ୍ୟ ଯନ୍ତ୍ରୀ ଥିଲେ। ସେ ଭୁବନେଶ୍ୱର ଜଳସେଚନ ଡିଭିଜନର ନିର୍ବାହୀ ଯନ୍ତ୍ରୀ ଥିଲା ବେଳେ ଶରଣକୁଳ ପାଖ ବୁଢା ବୁଢିଆଣୀ ଡ୍ୟାମ କରିଥିଲେ।

---



ସାହିତ୍ୟିକ ପ୍ରଫେସର ନିତ୍ୟାନନ୍ଦ ଶତପଥି
ଆବିର୍ଭାବ- ୨୫/୧୦/୧୯୩୭
ତିରୋଧାନ- ୩/୬/୨୦୨୦

ବିଶିଷ୍ଟ ସାହିତ୍ୟିକ ଓ "ଇସ୍ତାହାର"ର ସମ୍ପାଦକ। ସାହିତ୍ୟିକା ପ୍ରଫେସର ପ୍ରତିଭା ଶତପଥିଙ୍କ ସ୍ୱାମୀ। ସମାଜ ସଂସ୍କାରକ ଚକ୍ରଧର ଶତପଥି ଯେକି ଗୋଟିଏ ବିଧବା କନ୍ୟାର ପାଣି ଗ୍ରହଣ କରି ସମାଜରେ ଚହଳ ପକାଇ ଥିଲେ ସେ ହେଉଛନ୍ତି ପ୍ରତିଭାଙ୍କ ପିତା।

---



ଇଂ. ପ୍ରଫୁଲ୍ଲ ଚନ୍ଦ୍ର ପତି
ଆବିଭାବ-୧୯୩୫
ତିରୋଧାନ-୧୭।୦୫।୨୦୨୦

ସେ ଜଳସେଚନ ବିଭାଗର S.E. ଥିଲେ। ଇଞ୍ଜିନିଅରିଂ

ଆସୋସିଏସନରେ ଜଣେ ସକ୍ରିୟ କର୍ମୀ ଥିଲେ। Institute Of Engineers ଭବନ ରେ ଦେଖା ହୁଏ।

---



ଇଂ. ବିଜୟ ମିଶ୍ର
ଆବିର୍ଭାବ-୧୬।୦୭।୧୯୩୬
ତିରୋଧାନ-୨୦୨୦

ସେ କଟକ ଇଞ୍ଜିନିଅରିଂ ସ୍କୁଲରୁ ଡିପ୍ଲୋମା ହାସଲ କରି ଜଳସେଚନ ବିଭାଗରେ କାମ କରୁଥିଲେ। ସେ ତାଙ୍କର ନାଟକ ରଚନା ପାଇଂ. ଖ୍ୟାତ।୨୦୧୯ ରେ ଓଡିଆ ଚଳଚିତ୍ର ଜଗତର ସର୍ବୋଚ୍ଚ ସମ୍ମାନ ଜୟଦେବ ପୁରସ୍କାର ପାଇଥିଲେ।

---



ଡାକ୍ତର ବୈକୁଣ୍ଠ ନାଥ ମିଶ୍ର
ଆବିର୍ଭାବ-୧୯୩୩
ତିରୋଧାନ-୧୬।୦୬।୨୦୨୦

ତାଙ୍କ ଘର ମୟୂରଭଞ୍ଜ ଜିଲ୍ଲା ଦୁର୍ଗାପୁର ଗାଁରେ। ସେ ମୋ ସମ୍ପର୍କୀୟ ପ୍ରଫେସରର Dr. ସତ୍ୟବାଦୀ ହଜାରୀଙ୍କ ଆନାଟେମି ଛାତ୍ର। Dr. ମିଶ୍ର ତାଙ୍କ ଆତ୍ମଜୀବନୀରେ Dr. ହଜାରୀଙ୍କ କଥା ଉଲ୍ଲେଖ କରିଛନ୍ତି। ସେ ସ୍ୱାସ୍ଥ୍ୟ ବିଭାଗର ଡ଼ିରେକ୍ଟର ଥିଲେ।

---



ଇଂ. ଅଜିତ ମୋହନ ମୁଖାର୍ଜି
ଆବିର୍ଭାବ-୨୬।୦୨।୧୯୩୮
ତିରୋଧାନ-୦୧।୦୪।୨୦୧୯

କଟକ ଇଞ୍ଜିନିଅରିଂ ସ୍କୁଲରେ ମୋଠୁଁ ଦୁଇବର୍ଷ ସିନିଅର। ସେ ଡିପ୍ଲୋମା ପରେ AMIE ପରୀକ୍ଷା ଦେଇ ପାସ କରିଥିଲେ। ଜଣେ ଗାଳ୍ପିକ। ନିର୍ମାଣ ବିଭାଗରେ E.E ପଦରୁ ଅବସର ଗ୍ରହଣ କରିଥିଲେ।

---



ଇଂ. ଲିଙ୍ଗରାଜ ସେଠୀ
ଆବିର୍ଭାବ-୧୯୩୯

ତିରୋଧାନ-୨୦୧୭

ଘର ଆଠଗଡ଼। ମୋର କଟକ ଇଞ୍ଜିନିଅରିଂ ସ୍କୁଲ ସହପାଠୀ ସରକାରୀ ଯନ୍ତ୍ରୀ ହୋଇ P.H. (Eng) ରୁ ଅବସର ନେଇଥିଲେ।



ପ୍ରଫେସର ସିଦ୍ଧେଶ୍ୱର ଜେନା
ଆବିର୍ଭାବ-୦୩।୦୧।୧୯୪୯
ତିରୋଧାନ-୧୯।୦୭।୨୦୧୯

ଯାଜପୁରରେ ସଂସ୍କୃତ ଅଧ୍ୟାପକ ଥିଲେ। ଆମ କଲୋନୀରେ ବରମୁଣ୍ଡା ହାଉସିଂ ବୋର୍ଡରେ ରହୁଥିଲେ। ସେ ଜଣେ ଲେଖକ। ମୋର ବ୍ୟକ୍ତିଗତ ବନ୍ଧୁ।



ଭୂବିଜ୍ଞାନୀ ଡ଼ ନବକିଶୋର ମହାଲିକ
ଆବିର୍ଭାବ-୨୮।୦୨।୧୯୩୫
ତିରୋଧାନ-୨୪।୦୮।୨୦୨୮

ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ବ୍ୟାଚ geologyରେ ସେ ପ୍ରଥମ ହୋଇ ପାସ କରିଥିଲେ। ଅତ୍ୟନ୍ତ ଜ୍ଞାନୀ ଓ ଗୁଣୀ। ସେ ଆମ ହାସ୍ୟ କ୍ଲବର ସଦସ୍ୟଥିଲେ। ଜଣାଶୁଣା ବିଧାୟକ ଆକୁଳାନନ୍ଦ ବେହେରାଙ୍କ ଜ୍ୟେଷ୍ଠ ଜାମାତା।



ମୃତ୍ୟୁଞ୍ଜୟ ପାତ୍ର
ଆବିର୍ଭାବ
ତିରୋଧାନ-୦୧।୦୨।୨୦୧୯

ସେକ୍ରେଟେରିଏଟରେ ନିର୍ମାଣ ବିଭାଗରେ ସେକସନ ଅଫିସର ଥିଲେ। ସାହାଯ୍ୟକାରୀ ଅଫିସର। ତାଙ୍କ ଜନ୍ମିତ ସ୍ଥାନ ମୟୂରଭଞ୍ଜ ଜିଲ୍ଲା।



ଇଂ. ଜନ ବୁନିଆନ ଦାସ
ଆବିର୍ଭାବ-୧୯୩୨
ତିରୋଧାନ-୨୦୧୯

ନିର୍ମାଣ ବିଭାଗରେ ସଚିବ ତଥା

ସର୍ବୋଚ୍ଚ ଯନ୍ତ୍ରୀ ଥିଲେ। ସରଳ ଓ ଭଦ୍ରଲୋକ ଥିଲେ। ମୁଁ ନୟାଗଡ଼ର PWD SDO ଥିଲା ବେଳେ କେଶରପୁର ଗ୍ରାମ କୁ ଆସି ନୟାଗଡ଼ କେଶରପୁର C.V.R ପାଇଂ. ୧୨ ଲକ୍ଷ ଟଙ୍କା ଗ୍ରାଣ୍ଟ ଦେଇଥିଲେ। ମାତ୍ର ସେ ରାସ୍ତା RD ବିଭାଗକୁ ଯିବାରୁ ଟଙ୍କା ଦରକାର ପଡିଥିଲା।



ଇଂ. ଯୁଧିଷ୍ଠିର ଶତପଥି
ଆବିର୍ଭାବ-୨୧।୦୬।୧୯୪୩
ତିରୋଧାନ-୨୪।୦୮।୨୦୧୮

ଜନ୍ମ ଢେଙ୍କାନାଳ ଜିଲ୍ଲା, ଯୋରନ୍ଦା ପାଖରେ। ସେ ୧୯୬୩ରେ ଓଡିଶାର ୩ଟି ଯାକ ଇଂଜିନିଅରିଂ ସ୍କୁଲ ଭିତରେ topper ହୋଇଥିଲେ ଏବଂ ପରେ A.M.I.E ପରୀକ୍ଷା ଦେଇ ପାସ କରିଥିଲେ। ରାଜ୍ୟ ସରକାର ୧୯୭୮ରେ ଯେଉଁ R.E.O କମିଟି କରିଥିଲେ ଇଂ. ଶତପଥି ବହୁତ କାଗଜପତ୍ର ଯୋଗାଇ ଥିଲେ। ସେ S.Elevel-I ପଦରୁ ଅବସର ନେଇଥିଲେ। ସେ ସଚ୍ଚୋଟ ଇଞ୍ଜିନିଅର। ସେ ଗ୍ରାମ ଉନ୍ନୟନ ବିଭାଗର ଚିଫ୍ ଇଞ୍ଜିନିୟର ଅଫିସର କାମ କରୁଥିବା ବେଳେ ଏକ ପ୍ରସ୍ତାବ ଦେଇଥିଲେ ଯେ ଗାଁ ମଝିରେ ଯାଇଥିବା ଗ୍ରାମ୍ୟ ଦାଣ୍ଡ ପୂରା ପିଚୁ ହେବ। ଏହି ପ୍ରସ୍ତାବ ଦିଲ୍ଲୀରେ ମଧ୍ୟ ଗ୍ରହଣ ହେଲା।



ଇଂ. ରାଜକିଶୋର ମାହାପାତ୍ର
ଆବିର୍ଭାବ-୨୮।୦୨।୧୯୩୦
ତିରୋଧାନ-୧୨।୦୮।୨୦୧୯

୯୦ ବର୍ଷରେ ମୃତ। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ନୂଆ ଭୁବନେଶ୍ୱର ଗଢିବାରେ ତାଙ୍କର ଅବଦାନ ବହୁତ।



ଡ଼ ଶାରଦା କୁମାରୀ ମହାନ୍ତି
ଆବିର୍ଭାବ-୦୭।୧୧।୧୯୩୭
ତିରୋଧାନ-୦୪।୧୦।୧୯୯୩

ଘର ଜଗତସିଂପୁର। ସେ ନୟାଗଡରେ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କ ଲେଖା ଉପରେ Ph.D କରିଛନ୍ତି। ଏହା

ଗୋଟିଏ ପୁସ୍ତକ ଆକାରରେ ଇଂ. ପାଣି ସାହେବଙ୍କ ପ୍ରେସରେ ଛପା ହୋଇଛି ଏବଂ ପ୍ରକାଶିତ ହୋଇଅଛି ତାଙ୍କ ସ୍ୱାମୀଙ୍କ ଦ୍ୱାରା। ତାଙ୍କର ପୁତ୍ର ଚଣ୍ଡୀ ପ୍ରସାଦ ମହାନ୍ତି ଆର୍ମିର ବଡ ପଦରୁ ଅବସର ନେଇଛନ୍ତି।

---



ସୀତାରାମ ଦୋରା
ଆବିର୍ଭାବ-୦୧।୦୨।୧୯୪୫
ତିରୋଧାନ-୦୮।୦୯।୨୦୧୭

ଘର କେଶରପୁର, ଶରଣକୁଳ ଥାନା, ଖୋର୍ଦ୍ଧା ହାଇସ୍କୁଲରେ ଶିକ୍ଷକ ଥିଲେ। ସେ ଆମର ବନ୍ଧୁ ବାନ୍ଧବ ହେବେ।

---



ଇଂ. ଜି. ଭାସ୍କର ରାଓ ଦୋରା
ଆବିର୍ଭାବ-୦୧।୦୧।୧୯୪୦
ତିରୋଧାନ-୧୨।୧୦।୨୦୨୦

ଜନ୍ମ ପାଣ୍ଡିଆପଥର, ଗଂଜାମ ଜିଲ୍ଲା। ଇଂ. ଦୋରା ନିର୍ମାଣ ବିଭାଗର ମୁଖ୍ୟଯନ୍ତ୍ରୀ ହୋଇ ଅବସର ନେଲେ। ସେ ଜଣେ କାମିକା ଇଞ୍ଜିନିୟର। ୧୯୯୦-୧୧୯୯୫ ସେ ଫୁଲବାଣୀ (R+B) Dvn.ରେ ନିର୍ବାହୀ ଯନ୍ତ୍ରୀ ଥିଲା ବେଳେ ମୁଁ ସେଠାରେ A.E.E ଥିଲି। ସେ ନୟାଗଡ଼ର ଜଣାଶୁଣା ଆନାଟୋମି ଡ଼ାକ୍ତର ପ୍ରଫେସର ସତ୍ୟବାଦୀ ହଜାରୀଙ୍କ ଜ୍ୟେଷ୍ଠ ଜାମାତା।

---



ଇଂ. ଧ୍ରୁବ ଚରଣ ପରିଡ଼ା
ଆବିର୍ଭାବ-୨୯।୦୬।୧୯୩୦
ତିରୋଧାନ-୦୧।୧୧।୨୦୧୯

ଇଂ. ପରିଡ଼ା ସହକାରି ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ୧୯୬୦ ମସିହାରେ ସେ ନୟାଗଡ଼ରେ ଜୁନିଅର ଇଞ୍ଜିନିଅର ଥିଲା ବେଳେ ନୟାଗଡ଼ କଲେଜ ଭବନ କାର୍ଯ୍ୟତଦାରଖକରିଥିଲେ। ସେ ମେଳାପୀ ଏବଂ ସାହାଯ୍ୟକାରୀ। ମୋର ସୁବେଚ୍ଛା।

---



ଇଂ. ବନମାଳୀ ପଣ୍ଡା
ଆବିର୍ଭାବ-୧୬।୦୭।୧୯୫୯
ତିରୋଧାନ-୦୮।୧୨।୨୦୧୨

ଘର ନରସିଂହପୁର। ବୁର୍ଲାର ୧୯୬୨ ଇଞ୍ଜିନିଅରିଂ କଲେଜ ବ୍ୟାଚ। ନିର୍ମାଣ ବିଭାଗ ମୁଖ୍ୟ ଯନ୍ତ୍ରୀ ପଦରୁ ଅବସର ନେଲେ। ସାହିତ୍ୟିକ,ସମ୍ପାଦନା କରିଛନ୍ତି କାଳିଦାସଙ୍କ କୁମାର ସମ୍ଭବ।



ଆଡ଼ଭୋକେଟ ଆର୍ତ୍ତବନ୍ଧୁ ମିଶ୍ର
ଆବିର୍ଭାବ-୨୬।୦୫।୧୯୨୯
ତିରୋଧାନ-୨୧।୧୨।୨୦୧୯

ଜନ୍ମ ସାବିଦେଇପୁର, ନୟାଗଡ଼। ହାଇକୋର୍ଟର ବରିଷ୍ଠ ଆଡ଼ଭୋକେଟ ଶରଣକୁଳ କଲେଜ ପାଇଂ. ତାଙ୍କର ଅବଦାନ ସ୍ମରଣୀୟ।



ଗୋବିନ୍ଦରାମ ଭଞ୍ଜ
ଆବିର୍ଭାବ-୨୪।୦୪।୧୯୨୦
ତିରୋଧାନ-୦୫।୧୦।୨୦୧୮

ସେ ଜଣେ OAS ଅଫିସର। ମୋର ମଉସା ପ୍ରଫେସର ଡାକ୍ତର ସତ୍ୟବାଦୀ ହଜାରୀଙ୍କ ଖୋରଧା ହାଇସ୍କୁଲ କ୍ଲାସମେଟ। ସେ ସ୍ୱାସ୍ଥ୍ୟ ବିଭାଗରେ ଡେପୁଟି ସେକ୍ରେଟେରୀ ଥିଲା ବେଳେ ତାଙ୍କୁ ବିଶେଷ ସାହାଯ୍ୟ କରିଥିଲେ।



ଇଂ. ପ୍ରାଣକୃଷ୍ଣ ଆଚାର୍ଯ୍ୟ
ଆବିର୍ଭାବ-୧୧।୧୦।୧୯୩୪
ତିରୋଧାନ-୨୮।୦୧।୨୦୨୦

ଘର କଣ୍ଟାବଣିଆ, ନୟାଗଡ଼। ଜଳସେଚନ ବିଭାଗରେ ଚିଫ ଇଞ୍ଜିନିଅର ପଦରୁ ଅବସର ନେଲେ। ସେ ଲେଖିଛନ୍ତି "ନୟାଗଡ ଇତିହାସ"। ତାଙ୍କ ପିତା ବ୍ରିଟିଶ ଅମଳର ପୋଲିସ ଅଫିସର।



ଇଂ. ଗୋପାଳ ଚରଣ ମହାନ୍ତି
ଆବିର୍ଭାବ-୦୫।୦୬।୧୯୩୭
ତିରୋଧାନ-୩୧।୦୧।୨୦୨୦

ସେ ନିର୍ମାଣ ବିଭାଗରେ ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ। ମୁଁ ଚାରିବାଟିଆରେ କାମ କରୁଥିଲା ନେଲେ ସେ ଆଠଗଡ଼ (R+B) SubDvnରେ SDO ଥିଲେ।



ଇଂ. ଅପୂର୍ବକାନ୍ତ କମିଲା
ଆବିର୍ଭାବ-୨୧।୧୨।୧୯୩୬
ତିରୋଧାନ-୩୧।୦୩।୨୦୧୮

ନିର୍ମାଣ ବିଭାଗରେ ମୁଖ୍ୟ ଯନ୍ତ୍ରୀ ପଦରୁ ଅବସର ନେଲେ। ଇଂ. ମଦନମୋହନ କମିଲାଙ୍କ କଜିନ ସହୋଦର।



ଇଂ. ବାସୁଦେବ ସାହୁ
ଆବିର୍ଭାବ-୨୫।୦୫।୧୯୪୦
ତିରୋଧାନ-୦୨।୦୩।୨୦୧୮

ନିର୍ମାଣ ବିଭାଗରେ ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେଇଛନ୍ତି। ସେ ବୁର୍ଲା କଲେଜରେ ୧୯୬୩ ବ୍ୟାଚ। ୧୯୫୩ ମସିହା ମାଟ୍ରିକ ପରୀକ୍ଷାରେ ଅଙ୍କ ଅପସନାଲରେ ହାଇଟ ଆଣ୍ଡ ଡିଷ୍ଟାଣ୍ଟ ଅଙ୍କଙ୍କୁ ନେଇ ମୋରି ପରି ହଇରାଣ ହୋଇଥିଲେ ବୋଲି କହୁଥିଲେ।



ଇଂ. ଅକ୍ଷୟ ଚନ୍ଦ୍ର ରାୟ
ଆବିର୍ଭାବ-୨୩।୦୨।୧୯୪୩
ତିରୋଧାନ-୨୦।୦୯।୨୦୧୯

ପ୍ରଖ୍ୟାତ ଲେଖିକା ପ୍ରତିଭା ରାୟଙ୍କ ସ୍ୱାମୀ। ମୋର ସାଙ୍ଗ ଦେବରାଜ ଦାଶ ଏହାଙ୍କ ଅଧୀନରେ ଜୁନିୟର ଇଞ୍ଜିନିଅର ଥିଲେ।



ଚୌଧୁରୀ ଉପେନ୍ଦ୍ର ନାଥ ମିଶ୍ର
ଆବିର୍ଭାବ-୨୧।୦୮।୧୯୨୦
ତିରୋଧାନ-୩୦।୦୯।୧୯୯୯

ରାଜ୍ୟ ସରକାରଙ୍କ ଅର୍ଥ ବିଭାବଗରେ ପଦସ୍ଥ ଅଫିସର ଥିଲେ। ଏହାଙ୍କ ଜାମାତା ସନ୍ତୋଷ କୁମାର ମୋର ପୂଜ୍ୟ ହେଡମାଷ୍ଟର ରଘୁନାଥ ମିଶ୍ରଙ୍କ ପୁଅ।

---



ଇଂ. ଧୀରେନ୍ଦ୍ର ନାଥ ଦ୍ୱିବେଦୀ
ଆବିର୍ଭାବ-୧୧।୧୧।୧୯୨୯
ତିରୋଧାନ-୧୬।୧୨।୨୦୧୬

ସେ P.H. (Eng) ବିଭାଗରେ କାମ କରୁଥିଲେ। ମୋର ସାଙ୍ଗ ଶରତ ଜେନାଙ୍କ କ୍ଲାସମେଟ। ସେ ସ୍ୱାଧୀନତା ସଂଗ୍ରାମୀ ସୁରେନ୍ଦ୍ର ଦ୍ୱିବେଦୀଙ୍କ ସାନ ଭାଇ।

---



ଇଂ. ପୂର୍ଣ୍ଣଚନ୍ଦ୍ର ରଥ
ଆବିର୍ଭାବ-୨୫।୦୪।୧୯୩୬
ତିରୋଧାନ-୧୫।୧୦।୨୦୨୦

ସେ Diploma ପରେ AMIE ପାସ କରିଥିଲେ। ଆମେ ସାଙ୍ଗହୋଇ ପରୀକ୍ଷା ଦେଉଥିଲୁ। ମୋର ଇଞ୍ଜିନିଅରିଂ ସ୍କୁଲର ସିନିୟର ଲେକଚରର ଗଣେଶ୍ୱର ନନ୍ଦ ଙ୍କ ଜାମାତା। ସେ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ।

---



ପ୍ରତାପ ଚନ୍ଦ୍ର ମହାନ୍ତି
ଆବିର୍ଭାବ-୨୩।୧୦।୧୯୨୦
ତିରୋଧାନ-୧୫।୦୩।୧୯୯୩

ଅନେକ ଥର ତିର୍ତ୍ତୋଲରୁବିଧାନ ସଭାରୁ ନିର୍ବାଚିତ ହୋଇଥିଲେ। ବିଭିନ୍ନ ସମୟରେ ମନ୍ତ୍ରୀ ହୋଇଥିଲେ। ନିର୍ମାଣ ବିଭାଗରେ ୧୯୭୨ ରେ ଯେଉଁ ଜୁନିଅର ଇଞ୍ଜିନିଅର କାଡ଼ରନୂଆ ସୃଷ୍ଟି ହେଲା ତାହା ତାହାଙ୍କ ଯୋଗୁ। କାଡର ନିୟମ ବାହାର କରିବାକୁ

ଏତେ ଡେରି ହେଲା ଯେ ସେ ନିଜେ P&C ସେକ୍ରେଟେରିଙ୍କ ପାଖରେ ବସି କହିଲେ ରୁଲ ବାହାରିଲେ ମୁଁ ଏଠୁଁ ଉଠିବି। ଏହାଙ୍କ ଜାମାତା ସର୍ବେଶ୍ୱର ମହାନ୍ତି IASଙ୍କ ସଙ୍ଗେ ମୋର ଚିହ୍ନା ପରିଚୟ ଥିଲା। ଅନ୍ୟତମ ଜାମାତା ଇଂ. ନିଖିଳ ବିହାରୀ ଦାସ ମୋର ବନ୍ଧୁ।



ସ୍ଥପତି ସରୋଜ ରଞ୍ଜନ ପ୍ରଧାନ
ଆବିର୍ଭାବ-୧୦।୧୦।୧୯୩୯
ତିରୋଧାନ-୦୯।୦୧।୨୦୨୧

ତାଙ୍କ ଘର ଦଶପଲ୍ଲାରେ। ମୁଁ ୧୯୬୧ରେ କଟକ ପାରାଡାଇଜ ମେସରେ ଥିଲା ବେଳେ ସେ ମୋର ରୁମମେଟ ଥିଲେ। ରାଜ୍ୟ ସରକାର ଚିଫ ଅର୍କିଟେକ୍ଟର ହୋଇ ଅବସର ନେଇଥିଲେ।



ଡାକ୍ତର ଧରଣୀଧର ପାଣିଗ୍ରାହୀ
ଆବିର୍ଭାବ-୦୨।୦୧।୧୯୩୬
ତିରୋଧାନ-୧୬।୧୧।୨୦୨୦

ତାଙ୍କ ଜନ୍ମ ହିନ୍ଦୋଳରେ। ଧରଣୀଧର ଅର୍ଥନୀତି, ସମାଜ ତତ୍ତ୍ୱ ସଂସ୍କୃତି ସମ୍ପର୍କିତ ନାନା ପ୍ରବନ୍ଧ ଅନୁବାଦ ସହ ଅର୍ଥନୀତି ବିଷୟରେ ଉଭୟ ଓଡ଼ିଆ ଓ ଇଂରାଜି ଭାଷାରେ ଅନେକ ପୁସ୍ତକ ରଚନା କରିଛନ୍ତି। କରଣ ସିଂଙ୍କ ଆତ୍ମଜୀବନୀ ଅନୁବାଦ ପାଇଂ. ୨୦୦୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ପାଇଥିଲେ।ତାଙ୍କ ସଙ୍ଗେ ମୋର ଚିହ୍ନା ପରିଚୟ ଥିଲା।



ବାସୁଦେବ ଦୋରା
ଆବିର୍ଭାବ-୦୧।୦୭।୧୯୩୩
ତିରୋଧାନ-୧୦।୧୧।୨୦୨୦

ଜନ୍ମ ଖୋରଧା ଟାଉନ। A.G ଅଫିସରେ କାମ କରୁଥିଲେ। ଖୋରଧା କଲେଜ ପ୍ରତିଷ୍ଠା ଏବଂ ସେ ନିଜେ ପଢ଼ିଥିବା ଖୋରଧା BJP ହାଇସ୍କୁଲର ଉନ୍ନତି କରଣେ କାର୍ଯ୍ୟ କରିଛନ୍ତି। ସେ ଆମର ବନ୍ଧୁ ବାନ୍ଧବ। ଖୋରଧା ହାଇସ୍କୁଲର ଶତବାର୍ଷିକି ଉପଲକ୍ଷେ

ପ୍ରକାଶିତ ମାଗାଜିନ ମୁଁ ତାଙ୍କ ଠାରୁ ପାଇଥିଲି।

---



ଇଂ. ବ୍ରହ୍ମାନନ୍ଦ ସ୍ୱାଇଂ.
ଆବିର୍ଭାବ-୧୦।୦୭।୧୯୩୭
ତିରୋଧାନ-୧୫।୦୩।୨୦୨୦

ସେ ମୋର କଟକ ଇଞ୍ଜିନିଅରିଂ ସ୍କୁଲ କ୍ଲାସମେଟ। ସେ ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ।

---



ଶଶୀ ଶେଖର ମହାପାତ୍ର OAS
ଆବିର୍ଭାବ-୧୯୩୦
ତିରୋଧାନ-୨୮।୦୩।୨୦୨୧

ସେ ଜଣେ ସିନିଅର OAS ଅଫିସର। ରାଜସ୍ୱ ମନ୍ତ୍ରୀ ଉପେନ୍ଦ୍ର ଦିକ୍ଷୀତ ଙ୍କର ପ୍ରାଇଭେଟ ସେକ୍ରେଟେରି ଥିଲାବେଳେ ମୁଁ ତାଙ୍କୁ ଚିହ୍ନିଥିଲି। ମୋ ବଡଭାଇଙ୍କୁ ବ୍ରହ୍ମପୁର S.D.O. ରିଲିଭ ନକରିବାରୁ ତାଙ୍କୁ କହିଥିଲି। ଶଶୀ ଶେଖର ପୂର୍ବତନ ମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ସାନ ଭାଇ।

---



ଗାଳ୍ପିକା ଚନ୍ଦ୍ରମଣି ବେହୁରା
ଆବିର୍ଭାବ-
ତିରୋଧାନ-

ସେ ପ୍ରାଣୀ ବିଜ୍ଞାନ ଅଧ୍ୟାପକ ଡକ୍ଟର ବସନ୍ତ କୁମାର ବେହୁରାଙ୍କ ଧର୍ମପତ୍ନୀ। ରାଜସୁନାଖୋଲାରେ ରହୁଥିବା ସ୍ୱାଧୀନତା ସଂଗ୍ରାମୀ ମହେଶ୍ୱର ମିଶ୍ରଙ୍କ କନ୍ୟା। ମୋ ଉପର ଭାଇ ଦଣ୍ଡପାଣି ମହେଶ୍ୱର ମିଶ୍ରଙ୍କ ସହିତ ଆଗ ଦୁଆରି ଥିବାରୁ ମୋର ତାଙ୍କ ସହିତ ଚିହ୍ନା।

---



ପ୍ରଫେସର ଡକ୍ଟର ଜିତେନ୍ଦ୍ର ନାରାୟଣ ପଟ୍ଟନାୟକ
ଆବିର୍ଭାବ-୨୪।୦୮।୧୯୪୨
ତିରୋଧାନ-୧୦।୦୪।୨୦୨୧

ପ୍ରଫେସର ପଟ୍ଟନାୟକ ୧୯୬୩ ରେ ଇଂରାଜୀ ଅଧ୍ୟାପକ ରୂପେ କାମ ଆରମ୍ଭ କରିଥିଲେ। ୧୯୮୭

ରେ ସୋଭିଏଟ ଲ୍ୟାଣ୍ଡ ନେହ୍ରୁ ପୁରସ୍କାର ପାଇଥିଲେ। ୨୦୦୩ରେ ମୋର ସଂକଳିତ "Thesaurus of events and dates of Orissa" ପୁସ୍ତକର ଲୋକାର୍ପଣ ଉତ୍ସବର ସେ ଥିଲେ ମୁଖ୍ୟ ଅତିଥି।

---



ଇଂ. ବଂଶୀଧର ମହାନ୍ତି
ଆବିର୍ଭାବ-୧୯୩୯
ତିରୋଧାନ-୨୬।୦୪।୨୧

ନିଜ ଘର ପଟ୍ଟାମୁଣ୍ଡାଇ। ସେ ମୋର କଟକ ଇଞ୍ଜିନିଅରିଂ ସ୍କୁଲ ସହପାଠୀ। ବହୁଦିନ ଓଡିଶା ହାଉସିଂ ବୋର୍ଡରେ କାମ କରିଥିଲେ। ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ।

---



ଇଂ. ମୃତ୍ୟୁଞ୍ଜୟ ପଟ୍ଟନାୟକ
ଆବିର୍ଭାବ-୧୪।୦୫।୧୯୪୧
ତିରୋଧାନ-୧୯।୦୪।୨୦୨୧

୧୯୬୩ରେ ବୁର୍ଲା ଇଞ୍ଜିନିଅରିଂ କଲେଜ ପାସ ଆଉଟ। ସେ ରାଜ୍ୟ ସରକାରଙ୍କ ନିର୍ମାଣ ବିଭାଗରେ କାମ କରି ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ଜଣାଶୁଣା କବି ତଥା ଗଡଜାତ ଅମଳର ଦେବାନ ଦାମୋଦର ପଟ୍ଟନାୟକଙ୍କ ଅଣନାତି। ଦାମୋଦର ହେଉଛନ୍ତି ଓଡିଶାର ପ୍ରଥମ ମହିଳା କବିୟତ୍ରୀ ସୁଲକ୍ଷଣା ପଟ୍ଟନାୟକଙ୍କ ପୁଅ।

---



ଡାକ୍ତର କୁନ୍ତଳା କୁମାରୀ ସେଠୀ
ଆବିର୍ଭାବ-୦୧।୦୨।୧୯୪୬
ତିରୋଧାନ-୨୭।୦୪।୨୦୧୯

ଡାକ୍ତର କୁନ୍ତଳା କୁମାରୀଙ୍କ ସାଙ୍ଗରେ ଦେଖା ହୁଏ IRC Village ସ୍ଥିତ Age care ଆସୋସିଏସନ ରେ। ସେ ରିତିମତ Health checkup programmeରେ ଯୋଗ ଦିଅନ୍ତି।

---



ଇଂ. ସୂର୍ଯ୍ୟ ନାରାୟଣ ଦାଶ
ଆବିର୍ଭାବ-୧୯୩୬
ତିରୋଧାନ-୧୯।୦୨।୧୯୯୫

ନିଜ ଜନ୍ମିତ ସ୍ଥାନ ନରସିଂହପୁର। କଟକ ଇଞ୍ଜିନିଅରିଂ ସ୍କୁଲରୁ ୧୯୫୮ ରେ ପାସ କରିଥିଲେ। P.H.(En) ରେ ନିର୍ବାହୀ ଯନ୍ତ୍ରୀ ହୋଇଥିଲେ। ପ୍ରସ୍ତାବିତ ଜୁନିଅର କାର୍ଡର ନିୟମ ହେଲାବେଳେ ସେ ତାଙ୍କର ସିନିୟରିଟି ପାଇଁ ଆଡ଼ଭୋକେଟ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କୁ ଆଡ଼ଭୋକେଟ କରି ହାଇକୋର୍ଟରେ କେସ୍ କରିଥିଲେ।



ବସନ୍ତ ଦାସ
ଆବିର୍ଭାବ-୧୯୩୯
ତିରୋଧାନ-୨୯।୦୫।୨୦୨୧

ସାମ୍ବାଦିକ ବସନ୍ତ ଦାସଙ୍କ ଜନ୍ମ ବାଗଲପୁର (ଜଗତସିଂପୁର ଜିଲ୍ଲା)। ସେ ଜଣେ ବରିଷ୍ଠ ସାମ୍ବାଦିକ, ସ୍ତମ୍ଭକାର, ଲେଖକ ତଥା ରାଜନୈତିକ ସମୀକ୍ଷକ। ତାଙ୍କ ପ୍ରଣିତ ଅନେକ ବହି ସେ ମୋତେ ଦେଇଛନ୍ତି। ସେ ଅନେକଥର ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ମୁରଲୀଧର ଶତପଥିଙ୍କ ସାଙ୍ଗରେ ମୋ ଘରକୁ ଆସିଛନ୍ତି।



ସର୍ବେଶ୍ୱର ମହାନ୍ତି IAS
ଆବିର୍ଭାବ-୧୯୪୪
ତିରୋଧାନ-୧୬।୦୫।୨୦୨୧

ତାଙ୍କ ଘର ଜଗତସିଂପୁର ଜିଲ୍ଲାରେ। ସେ ମନ୍ତ୍ରୀ ପ୍ରତାପ ମହାନ୍ତିଙ୍କ ଜ୍ୱାଇଁ। ତାଙ୍କ ଧର୍ମପତ୍ନୀ ସଂଧ୍ୟା ମହାନ୍ତି ନବରବିର ସମ୍ପାଦିକା। ତାଙ୍କ ସାଙ୍ଗରେ ମୋର ଚିହ୍ନାପରିଚୟ ଆଗରୁ ଥିଲା। ୧୭।୧୦।୨୦୧୦ ରେ ସେ ମୋତେ ନବରବିର ଗୋଟେ କପି ଦେଇଥିଲେ। ସେ ଭୁବନେଶ୍ୱରରେ R.T.O ଥିଲା ବେଳେ ମୋର ସମସ୍ୟା ନେଇ ମୁଁ ତାଙ୍କୁ ପ୍ରଥମେ ଭେଟିଥିଲି। ତାଙ୍କର ସଢ଼ୁ ଇଂ. ନିଖିଳ ବିହାରୀ ଦାସ ମୋର ବନ୍ଧୁ।



## ଲକ୍ଷ୍ମଣ ଚୌଧୁରୀ

ଆବିର୍ଭାବ-୦୬।୦୫।୧୯୩୬

ତିରୋଧାନ-୦୯।୦୫।୨୦୨୧

ସେ ଆମ ଶରଣକୁଳ ହାଇସ୍କୁଲର ଛାତ୍ର। ତାଙ୍କ ଘର ନନ୍ଦିଘୋର। ୧୯୫୫ ରେ ମାଟ୍ରିକ ପାସ କରିଥିଲେ। ମୋ ଉପର ଭାଇ ଦଣ୍ଡ ପାଣିଙ୍କ କ୍ଲାସମେଟ। ଜୁନିଅର ଇଞ୍ଜିନିଅର ପଦରୁ ଅବସର ନେଇଥିଲେ।

---



## ଇଂ. ବାନାମ୍ବର ଖଟେଇ

ଆବିର୍ଭାବ-୧୫।୦୮।୧୯୪୭

ତିରୋଧାନ-୧୨।୦୬।୨୦୨୧

ସେ ଶରଣକୁଳ ପାଖ ଆରଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ। S.E (ବିଦ୍ୟୁତ)ପଦରୁ ଅବସର ନେଇଥିଲେ। ଏହାଙ୍କ ପିତା ଦୁର୍ଯୋଧନ ଖଟେଇ ଜଳସେଚନ ବିଭାଗର ଠିକାଦାର ଥିଲେ।

---



## ଗାନ୍ଧୀ ବାଦୀ ରାଧାମୋହନ (ସାହୁ)

ଆବିର୍ଭାବ-୧୯୪୩

ତିରୋଧାନ-୧୧।୦୬।୨୦୨୧

ରାଧାମୋହନଙ୍କ ଜନ୍ମ ଗ୍ରାମ ଓଡଗାଁ ପାଖ ରଙ୍ଗଣି ପାଟଣାରେ। ସେ କଲେଜ ପ୍ରିନସପାଲ ପଦରୁ ଅବସର ନେଇଥିଲେ। ସେ ଆଦର୍ଶ ଓ ଗାନ୍ଧିବାଦୀ। ରାଜ୍ୟରେ ଜୈବିକ କୃଷିର ପ୍ରମୁଖ ଉଦ୍ୟୋକ୍ତ ବିଶିଷ୍ଟ ପରିବେଶବୀତ।

---



## ଇଂ. ଶରତ ଚନ୍ଦ୍ର ଦାସ

ଆବିର୍ଭାବ-୦୧।୦୭।୧୯୨୪

ତିରୋଧାନ- ୦୬।୨୦୨୧

ଇଂ. ଶରତ ଦାସ ନିର୍ମାଣ ବିଭାଗରୁ ସହକାରୀ ଯନ୍ତ୍ରୀ ପଦର ଅବସର ନେଇ ଥିଲେ। ସେ ନୟାଗଡରେ P.W.DS.D.O ଥିଲେ। ସମସ୍ତଙ୍କର ସେ ପ୍ରିୟଭାଜନ ଥିଲେ।

---



ଡ଼ ଦେବେନ୍ଦ୍ର କାନୁନଗୋ
ଆବିର୍ଭାବ-୧୯୩୧
ତିରୋଧାନ-୦୭।୦୬।୨୦୨୧

ମୃତ୍ୟୁ ସମୟକୁ ତାଙ୍କର ବୟସ ୯୦ ବର୍ଷରୁ ଉର୍ଦ୍ଧ ହୋଇଥିଲା। ସେ ଜଣେ ପ୍ରସିଦ୍ଧ ଭୂତତ୍ତ୍ୱବୀତ। ମୋର ଜଣାଶୁଣା ପ୍ରଫେସର ଡକ୍ଟର ନବକିଶୋର ମହାଲିକ ଏହାଙ୍କ ଠାରେ ଗବେଷଣା କରି Ph.D ପାଇଲେ। ୟେ ମୋର କଟକ ଇଞ୍ଜିନିଅରିଂ ସ୍କୁଲ କ୍ଲାସମେଟ ପୂର୍ଣ୍ଣଚନ୍ଦ୍ର କାନୁନଗୋଙ୍କ ବଡ ଭାଇ ଅଟନ୍ତି।

---



ଜାପାନି ବାବୁ (S.K.B ନାରାୟଣ)
ଆବିର୍ଭାବ-୦୩।୦୩।୧୯୪୧
ତିରୋଧାନ-୦୫।୦୭।୨୦୨୧

ସେ ନିର୍ମାଣ ବିଭାଗର ମୁଖ୍ୟ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ସାହିତ୍ୟ ଓ ସଂଗଠନ କ୍ଷେତ୍ରର ଅଗ୍ରଣୀ। ୧୯୯୦ ରେ ନୟାଗଡରେ ରୋଟାରୀ କ୍ଲବ ପ୍ରତିଷ୍ଠା କରିଥିଲେ। ମୁଁ ନୟାଗଡରେ କାମ କରୁଥିଲା ବେଳେ ସେ ମୋର ନିର୍ବାହୀ ଯନ୍ତ୍ରୀ ଥିଲେ। ସବୁ ଭଲ ଗୁଣର ଅଧିକାରୀ। କୌଣସି ଖରାପ ଗୁଣ ଅଛି ବୋଲି ମନେ ହୁଏନା। ସେ ଜଣେ ଗାଳ୍ପିକ, ରୋଟାରିଆନ, ତାଙ୍କର ବହୁ ଆଦର୍ଶ ଚରିତ୍ରର ଅଧିକାରୀ।

---



ଇଂ. ରଘୁ ନାଥ ପଣ୍ଡା
ଆବିର୍ଭାବ-୨୨।୦୨।୧୯୩୯
ତିରୋଧାନ-୧୮।୦୭।୨୦୨୧

ରଘୁନାଥ ମୋର ଡିପ୍ଲୋମା କ୍ଲାସମେଟ। ସେ ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ଗୋଟିଏ କଥା ମନେ ପଡ଼େ ୧୯୬୯ ରେ ରାଜ୍ୟ ସରକାରଙ୍କ G.A ବିଭାଗ ଅଧିନରେ କାମ କରୁଥିବା ଆବୋରିକଲଚରିଷ୍ଟ ଚାକିରି ଛାଡି ଯିବାପରେ ତାଙ୍କ ସରକାରୀ କ୍ୱାଟରକୁ ରଘୁପଣ୍ଡାଙ୍କୁ ଦିଆଗଲା ଉଦ୍ଦେଶ ମୂଳକଭାବରେ। କାରଣ ସେ ଘର ପ୍ରାଙ୍ଗଣରେ ଅନେକ ପ୍ରକାର ବୃକ୍ଷ ଲତା, କୃତିମ ପାହାଡ, ଝରଣା ଇତ୍ୟାଦି ଥିଲା। ସେ ସବୁ ଗଛ

ଲତାକୁ ବଞ୍ଚାଇବା ପାଇଁ. ରଘୁନାଥ ହିଁ ପାରିବେ, କାରଣ ତାଙ୍କ ହାତରେ ଲୋକ ଅଛନ୍ତି। ଅନେକ ବର୍ଷଧରି ସେ ଗଛଲତା ରହିଲା। ମାତ୍ର ତାଙ୍କ ବଦଳି ପରେ ଯେଉଁ ଲୋକ ଆସିଲେ ସେ ବୃକ୍ଷ ଲତାର ଦାୟିତ୍ୱ ଚଳେଇ ପାରିବାକୁ ଅକ୍ଷମ ହେବାରୁ ସବୁ ନଷ୍ଟ ହୋଇଗଲା।



ଡ଼ ବିଜୟ କୁମାର ରଥ
ଆବିର୍ଭାବ-୧୯୪୬
ତିରୋଧାନ-୨୦୨୧

ବିଜୟ କୁମାର ରଥ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗରେ କାମ କରୁଥିଲେ। ମୁଁ ଏ ସମ୍ବନ୍ଧରେ ବହି ଲେଖୁଥିବାରୁ ତାଙ୍କ ସଙ୍ଗେ ମୋର ଦେଖା ହୁଏ। ସେ ଅନେକ ବହି ଲେଖିଛନ୍ତି।



ପରେଶ ଚନ୍ଦ୍ର ନାୟକ
ତିରୋଧାନ-ଅଗଷ୍ଟ ୨୦୨୧

ପରେଶ ଚନ୍ଦ୍ର ନାୟକ R.S.S. ର ସକ୍ରିୟ କର୍ମୀଥିଲେ। ସେ ଜଣେ ସାମାଜିକ କର୍ମକାରକ। ୨୦୦୩ ରେ ମୋର ସଂକଳିତ Thesaurus of events and dates of Orissa କିଛି ବହି ତାଙ୍କୁ ଦେଇଥିଲି ଆମେରିକାରେ ଓଡିଆ ଲୋକଙ୍କୁ ଦେଖାଇ ବିକିବା ପାଇଁ। ସେ ଥିଲେ ଚିର କୁମାର।



ରାମମୂର୍ତ୍ତି ଦୋରା
ଆବିର୍ଭାବ-୧୯୩୯
ତିରୋଧାନ-୨୭।୦୭।୨୦୨୧

ରାମମୂର୍ତ୍ତି ଦୋରା କ୍ୟାପିଟାଲ ହାଇସ୍କୁଲରେ ଶିକ୍ଷକ ଥିଲେ। ବହୁତ ଦିନ ଧରି ଭାରତ ସ୍କାଉଟ ଏବଂ ଗାଇଡସ୍ ର ରାଜ୍ୟ ସମ୍ପାଦକ ଥିଲେ। ତାଙ୍କ ନିଜ ଘର ଗଞ୍ଜାମ ଜିଲ୍ଲାର ପାଣ୍ଡିଆ ପଥର। ନୟାଗଡର କେଶପାନିଆ ଗ୍ରାମର ୰ ଲଛବନ ଦୋରା ରାମମୂର୍ତ୍ତିଙ୍କ ଭିଣୋଇ।



ଏମ୍ ଗୋପୀଚାନ୍ଦ

ଆବିର୍ଭାବ-୧୪।୦୭।୧୯୬୪
ତିରୋଧାନ-୦୩।୦୮।୨୦୨୧

ଗୋପୀଚାନ୍ଦ ଜଳସେଚନ ବିଭାଗର ଚିଫ ଇଞ୍ଜିନିଅର M.L. Dasଙ୍କର ପୁତ୍ର। ଗୋପୀଚାନ୍ଦ ଆମର ବନ୍ଧୁବାନ୍ଧବ।



ଆଡଭୋକେଟ କେଦାର ନାଥ ଜେନା
ଆବିର୍ଭାବ-
ତିରୋଧାନ-

କେଦାର ବାବୁ ବରିଷ୍ଠ ଆଡଭୋକେଟ ବୀରେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଜୁନିଅର ଥିଲେ। ୧୯୭୫ ମସିହାରେ ସେତେବେଳେ ଆଉ ଦୁଇଜଣ ମଧ୍ୟ ଜୁନିଅର ଥିଲେ ସେମାନେ ହେଲେ ସୁବାସ ଲାଲ ଏବଂ ମନୋରଞ୍ଜନ ପଣ୍ଡା। ଆମେ କେଶ ସଂକ୍ରାନ୍ତ ଏମାନଙ୍କୁ ଭେଟୁଥିଲୁ।



ଜ୍ୟୋତିର୍ବିଦ ଦଣ୍ଡପାଣି ପଣ୍ଡା

ଆବିର୍ଭାବ-୧୫।୧୦।୧୯୨୫
ତିରୋଧାନ-୨୦।୦୭।୨୦୨୧

ଯେ ଜଣେ ଜୋତିଷ ବିଷାରଦ। ୧୯୯୯ ରେ ଲେଖିଛନ୍ତି "ଓଡିଶାର କୃତୀ ସନ୍ତାନଙ୍କ ଜାତକ ଓ ଜୀବନୀ"। ଯେଉଁ ଥିରେ ସେ ଲେଖିଛନ୍ତି ମଧୁ ବାବୁଙ୍କ ଜନ୍ମ ୧୮୪୮ April ୨୮ ନୁହେଁ। ତାଙ୍କର ଯେଉଁ ଜନ୍ମକୋଷ୍ଠି ମିଳିଛି, ସେଥିରୁ ଗ୍ରହବାସ୍ତାନଙ୍କୁ ଧରିଲେ ୧୧।୦୫।୧୮୪୮ ହେବ।



ଇଂ. କେ.କାଳିଚରଣ ଦୋରା
ଆବିର୍ଭାବ-୧୧।୦୯।୧୯୩୯
ତିରୋଧାନ-୦୧।୦୮।୨୦୨୧

ଇଂ. କାଳିଚରଣଙ୍କ ଜନ୍ମ ଗଞ୍ଜାମର ଗରେଇ ଝଳି ଗ୍ରାମରେ। ସେ କଟକ ଇଞ୍ଜିନିଅରିଂ ସ୍କୁଲରୁ ୧୯୫୯ରେ ପାସ କରି ପରେ ମାଡ୍ରାସ ଯାଇ AMIE ପାସ କରିଥିଲେ। ନିର୍ମାଣ ବିଭାଗରେ ଚିଫ ଇଞ୍ଜିନିଅର ପଦରେ କାମ କରି ଅବସର ନେଲେ। ସେ ବରମୁଣ୍ଡା B.D.A. colonyରେ ରହୁଥିଲେ। ନୟାଗଡର କେଶରପୁର ଗ୍ରାମର ପୁଲିସ ଅଫିସର ସ୍ୱର୍ଗତ ଲିଙ୍ଗରାଜ ହଜାରୀଙ୍କ ଜ୍ୟେଷ୍ଠ ଜାମାତା।



K. ସରୋଜିନୀ ଦୋରା
ଆବିର୍ଭାବ-୧୯।୧୦।୧୯୪୯
ତିରୋଧାନ-୨୮।୦୭।୨୦୨୧

ସରୋଜିନୀ ଇଂ. କାଳିଚରଣ ଦୋରଙ୍କର ଧର୍ମପତ୍ନୀ। ସେ ନୟାଗଡ଼ ଶରଣକୁଳ ଥାନା କେଶର ପୁର ଗ୍ରାମର ଲିଙ୍ଗରାଜ ହଜାରୀଙ୍କ ଜ୍ୟେଷ୍ଠା କନ୍ୟା ଏବଂ ବାଣିବିହାରର ଅବସର ପ୍ରାପ୍ତ ପ୍ରଫେସର ଡକ୍ଟର ନାରାୟଣ ହଜାରୀଙ୍କ ଭଗିନୀ।



ସଚିଦାନନ୍ଦ ରାୟ
ଆବିର୍ଭାବ-୦୬।୦୯।୧୯୪୨
ତିରୋଧାନ-୧୦।୦୯।୨୦୨୧

ଆମ ବରମୁଣ୍ଡା ହାଉସିଂ କଲୋନିର ବାସିନ୍ଦା। ମନ୍ଦିର କାର୍ଯ୍ୟକ୍ରମ ଆସୋସିଏସନ କର୍ମରେ ଅଗ୍ରଣୀ ଭୂମିକା ନିର୍ବାହ କରୁଥିଲେ।



ଶରତ କୁମାର ମହାନ୍ତି
ଆବିର୍ଭାବ-୧୩।୦୩।୧୯୨୫
ତିରୋଧାନ-୦୧।୦୯।୨୦୨୧

ରିଟାୟାର୍ଡ଼ ପୋଲିସ ଅଫିସର। ଘର ଖୋରଧାରେ। ତାଙ୍କ ପୁଅ ଇଂ. ନରେଶ ମୋର ସହକର୍ମୀ ଥିଲେ B.D.Aରେ ୧୯୯୩-୯୪ ମସିହାରେ।



ଶ୍ରୀ ନିବାସ ସାହୁ, ଆଇଏଏସ୍
ଆବିର୍ଭାବ-୧୯୨୩
ତିରୋଧାନ-୦୭।୦୯।୨୦୨୧

ସେ ଥିଲେ ଦର୍ଶନ ଅଧ୍ୟାପକ। ରୋଟାରି କ୍ଲବର କର୍ମକର୍ତ୍ତା। ସେ IAS ପଦକୁ ସିଲେକସନରେ ପ୍ରାପ୍ତ ହୋଇଥିଲେ। ସେ ADM ହିସାବରେ କାମ କଲାବେଳେ ତାଙ୍କୁ ଶାସନ ସମନ୍ଧିୟ କାର୍ଯ୍ୟ ଭଲ ନଲାଗିବାରୁ Z.A. Dave ଚିଫ୍ ସେକ୍ରେଟେରି

ଥିଲାବେଳେ ତାଙ୍କୁ D.P.I. ପଦରେ ନିଯୁକ୍ତି ହୋଇଥିଲା । ମୋର ବନ୍ଧୁ R.B. Patnaik ଚିଫ ସେକ୍ରେଟେରିଙ୍କୁ ତାଙ୍କ ପାଇଁ ଡାଭେଙ୍କୁ କହିଥିଲେ ।



ଇଂ. ଜନାର୍ଦ୍ଦନ ରାୟ
ଆବିର୍ଭାବ-୨୫।୦୪।୧୯୩୦
ତିରୋଧାନ-୧୪।୧୧।୨୦୨୦

ସେ ପୂର୍ତ୍ତବିଭାଗରେ କାମ କରି ସହକାରୀ ଯନ୍ତ୍ରୀ ପଦରୁ ଅବସର ନେଲେ । ସେ ସହକାରୀ ଯନ୍ତ୍ରୀ ପଦକୁ ପ୍ରମୋସନ ପାଇଲାବେଳେ ଡିପ୍ଲୋମା କାର୍ଡରର ସମସ୍ତ ବାକିଆ ପ୍ରମୋସନ ଦିଆଯାଇଥିଲା ।



ଇଂ. ନରେଶ ଚନ୍ଦ୍ର ମଲ୍ଲ
ଆବିର୍ଭାବ-୨୬।୦୯।୧୯୨୭
ତିରୋଧାନ-୦୨।୧୧।୨୦୨୧

ଜନ୍ମିତ ସ୍ଥାନ ସାଲେପୁର। ତାଙ୍କ ବାପା ଜମିଦାର ଥିଲେ। ମଲ୍ଲ ସାହେବ ମୋର ଅଧ୍ୟାପକ ଥିଲେ କଟକ ଇଞ୍ଜିନିଅରିଂ ସ୍କୁଲରେ। ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେଲେ। ସେ ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାଗ ନେଉଥିଲେ।



ରବିନାରାୟଣ ଦାସ, I.A.S.
ଆବିର୍ଭାବ-୧୯୩୫
ତିରୋଧାନ-୧୯୨୧

ଓଡିଶାର ଚିଫ୍ ସେକ୍ରେଟେରି ଥିଲେ। ତାଙ୍କର ପିତା ହେଉଛନ୍ତି ଦୁର୍ଗାଚରଣ ଦାସ।

ଜାନକୀବଲ୍ଲଭ ପଟ୍ଟନାୟକ ଏବଂ ଏବଂ ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ସେ ଚିଫ୍ ସେକ୍ରେଟାରୀ ଥିଲେ। ସେ ଜଣେ କର୍ମଠ ଅଫିସର।



ଇଂ. ଗୋପାଳ ଚନ୍ଦ୍ର ମିତ୍ର
ଆବିର୍ଭାବ-୧୩।୦୧।୧୯୩୮
ତିରୋଧାନ-୨୩।୧୨।୨୦୨୧

ମିତ୍ର ସାହେବ ନିର୍ମାଣ ବିଭାଗର ସେକ୍ରେଟେରି ପଦରୁ ଅବସର ନେଲେ। ପୁରୀ ମନ୍ଦିର ମରାମତି କାର୍ଯ୍ୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେ ପଦ୍ମଶ୍ରୀ ଉପାଧି ପାଇଥିଲେ ତାଙ୍କର ଜେଜେ ବାପା ତ୍ରିଲୋକ୍ୟନାଥ ମିତ୍ର ବ୍ରିଟିଶ ଶାସନରେ ଡେପୁଟି କଲେକ୍ଟର ଥିଲେ। ସେ ହୋମିଓପାଥି ଉପରେ ଏକ ବହି ଲେଖିଛନ୍ତି।

---



ଇଂ. ବିଜୟ କୁମାର ମହାନ୍ତି
ଆବିର୍ଭାବ-୦୧।୦୯।୧୯୪୩
ତିରୋଧାନ-୧୦।୧୧।୨୦୧୧

ଘର ସାଲେପୁର। ସେ ଚିଫ ଇଞ୍ଜିନିଅର ପଦରୁ ଅବସର ନେଇଥିଲେ। ବଡ ସଚ୍ଚୋଟ ଅଫିସର। ନୟାପଲ୍ଲୀରେ ଥିବା ଏଜ୍ କେୟାର ଆସୋସିଏଟ୍ ର ସମ୍ପାଦକ/ଉପ ସଭାପତି ଥିଲେ। ମୋର ବ୍ୟକ୍ତିଗତ ବନ୍ଧୁ ଥିଲେ। କବି ତଥା ସଙ୍ଗୀତଜ୍ଞ ଦାମୋଦର ପଟ୍ଟନାୟକଙ୍କ ପୁଅ ସୂର୍ଯ୍ୟଙ୍କ ନାତୁଣିଙ୍କୁ ବିବାହ କରିଛନ୍ତି ବିଜୟ।

---



ପ୍ରଫେସର ମହେନ୍ଦ୍ର କୁମାର ମହାନ୍ତି
ଆବିର୍ଭାବ-୦୮।୦୭।୧୯୫୧
ତିରୋଧାନ-୦୮।୧୦।୨୦୨୧

ତାଙ୍କ ନିଜ ଘର ଦର୍ପଣ ତହସିଲ ମହାବିନାୟକ। ଖୋରଧା ପ୍ରାଣନାଥ କଲେଜରେ ପ୍ରିନସିପାଳ ଥିଲେ। ସେ ଇଂରାଜି ଅଧ୍ୟାପକ ଥିଲେ। କୌଣସି ଭୁଲକୁ ସେ କ୍ଷମା ଦେବେନି। ମୁଁ ସଂକଳନ କରିଥିବା "Thesaurus of Events & Dates of Orissa" ବହି ପାଇଁ ତାଙ୍କ ସାହାଯ୍ୟ ଭୁଲି ହେବନି।

---



ଦୀପକ ଗଡନାୟକ
ଆବିର୍ଭାବ-୧୯୩୬
ତିରୋଧାନ-୦୧।୧୦।୨୦୨୦

ସେ ଅନୁଗୁଳର କବି ରାଧା ମୋହନ ଗଡନାୟକଙ୍କ ପୁତ୍ର ଏବଂ କୃଷି ପ୍ରଫେସର ମନୋରଞ୍ଜନ ରାୟଙ୍କ ଭିଣୋଇ। ସେ ମୋର ଚିହ୍ନା ପରିଚୟ ୧୯୫୭ ମସିହାରୁ।

---



ରଣଜିତ ମହାନ୍ତି I.P.S
ଆବିର୍ଭାବ-୧୯୪୫
ତିରୋଧାନ-୨୩।୧୨।୨୦୨୧

ସେ ବେଙ୍ଗଲ କାର୍ଡର ପୋଲିସ D.G. ଥିଲେ। ମୁଁ ୧୯୮୪-୮୭ ରେ ଚାରବାଟିଆରେ P.W.DS.D.O ଥିଲାବେଳେ ସେ ARC ଆସିଷ୍ଟାଣ୍ଟ ଡ଼ିରେକ୍ଟର ଥିଲେ।

---



ବିଦ୍ୟୁତଲତା ଶତପଥି
ଆବିର୍ଭାବ: ୩୦/୧୧/୧୯୪୮
ତିରୋଧାନ-୧୭।୧୨।୨୦୨୧

ମୋର ବନ୍ଧୁ ଇଂ. ଯୁଧିଷ୍ଠିର ଶତପଥିଙ୍କ ଧର୍ମପତ୍ନୀ। ଆମର ପାରିବାରିକ ବନ୍ଧୁତା ଥିଲା। ବିଦୁଙ୍କ ସ୍ୱାମୀ ଯୁଧିଷ୍ଠିର ଓଡ଼ିଶାର ସମସ୍ତ ଇଂଜିନିଅରିଂ ସ୍କୁଲର ଟପ୍ପର (୧୯୬୩ ମସିହା) ଥିଲେ।

---



ପ୍ରଫେସର Dr. ସୁରେନ୍ଦ୍ର କୁମାର ରାୟ
ଆବିର୍ଭାବ-୧୦।୦୧।୧୯୪୨
ତିରୋଧାନ-୧୮।୧୨।୨୦୨୧

ଡ଼ାକ୍ତର ରାୟ ଆମ ଫକିର ମୋହନ ନଗର ସ୍ଥିତ ସିଟିଜନ କାଉନସିଲର ସଭାପତି ଥିଲେ। ଅତ୍ୟନ୍ତ ଭଦ୍ର ଏବଂ ଅମାୟିକ। ପ୍ରାଣୀ ବିଜ୍ଞାନୀ ହିସାବରେ ତାଙ୍କର ବହୁ ନାଁ ଥିଲା। ତାଙ୍କ ଜନ୍ମସ୍ଥାନ ଯାଜପୁର।

---



ଇଂ. ଧନେଶ୍ୱର ଧଳ
ଆବିର୍ଭାବ-୧୯୩୪
ତିରୋଧାନ-୨୪।୧୨।୨୦୨୧

ଇଂ. ଧନେଶ୍ୱର ଧଳ ଇଲେକ୍ଟ୍ରିକାଲ ଇଞ୍ଜିନିଅର ଥିଲେ। ସେ କାହାକୁ ଡରନ୍ତିନି। ସେ ସମୟରେ ସେ ଗୋଟିଏ ଟେପ ରେକୋର୍ଡର ନେଇ ତାଙ୍କ ଉପରିସ୍ଥ ଅଫିସର ଯାହା କହିଲେ ତାହା ବାହାରେ ପ୍ରକାଶ କରିଥିଲେ। ୧୯୬୬-୬୭ ରେ ସେ MLA

Quarterରେ ରହୁଥିଲା ବେଳେ ଚିହ୍ନା ପରିଚୟ ଥିଲା।



ଇଂ. ସରୋଜ କୁମାର ପଟ୍ଟନାୟକ
ଆବିର୍ଭାବ-୧୯୪୦
ତିରୋଧାନ-୧୩।୦୧।୨୦୨୧

ଘର ବାରିପଦା। ସରୋଜ ମୋ ଡିପ୍ଲୋମା କ୍ଲାସମେଟ। ସେ ଜୁନିଅର ଇଞ୍ଜିନିଅର ଥାଇ ସଙ୍ଗୀତରେ ଭଲ ନାଁ କରିଥିଲେ। ତାଙ୍କର ବଡଭାଇ ସନ୍ତୋଷ କୁମାର ମଧ୍ୟ ଇଞ୍ଜିନିଅରିଂ ରେ ଡିପ୍ଲୋମା କରିଥିଲେ।



ଇଂ. ଦିଲୀପ ଚନ୍ଦ୍ର ପଣ୍ଡା
ଆବିର୍ଭାବ-୧୯୨୮
ତିରୋଧାନ-୧୮।୦୧।୨୦୨୧

ସେ ନିର୍ମାଣ ବିଭାଗର ସର୍ବୋଚ ଯନ୍ତ୍ରୀ ତଥା ସେ ସେକ୍ରେଟେରି ପଦରୁ ଅବସର ନେଇଥିଲେ। ବିଭାଗରେ ସେ ଖୁବ ନାଁ କରିଥିଲେ।



ସମର ବିଳାସ ପଟ୍ଟନାୟକ
ଆବିର୍ଭାବ-୧୯୩୨
ତିରୋଧାନ-୨୦୨୧

ଜନ୍ମ ଜଟଣି ନିକଟସ୍ଥ ରେଙ୍ଗାଲି ଗ୍ରାମରେ। ସମର ବିଳାସ ପଟ୍ଟନାୟକ ରାଜ୍ୟ ସରକାରଙ୍କ ସୂଚନା ଅଫିସରେ ଥିଲେ। ସେ ଆତ୍ମଜୀବନୀ ଲେଖିଛନ୍ତି।



ଡାକ୍ତର ମୁରଲୀଧର ନାୟକ
ଆବିର୍ଭାବ-୧୯।୧୧।୧୯୪୧
ତିରୋଧାନ-୨୪।୦୧।୨୦୨୨

ସେ ମୋର ସାଙ୍ଗ ଇଂ. ସୁରେନ୍ଦ୍ର ନାୟକଙ୍କ ସାନ ଭାଇ। ଘର ଚାନ୍ଦୋଳ। କ୍ୟାପିଟାଲ ହାସପାତାଲରେ ଅନେକ ଦିନ କାମ କରୁଥିଲେ।



ଇଂ. ମନୋରଞ୍ଜନ କର

ଆବିର୍ଭାବ-୨୩।୦୭।୧୯୪୦
ତିରୋଧାନ-୦୧।୦୨।୨୦୨୨

ଜନ୍ମ ନୟାଗଡ଼ ଜିଲ୍ଲା ଶରଣକୁଳ। ସେ ୧୯୫୭ ରେ ମାଟ୍ରିକ ପାସ କରିଥିଲେ ପ୍ରଥମ ଶ୍ରେଣୀରେ। ସେ ମୋର କ୍ଲାସମେଟ। ନିର୍ମାଣ ବିଭାଗରେ ମୁଖ୍ୟଯନ୍ତ୍ରୀ ପଦରୁ ଅବସର ନେଲେ। ସେ ଅନେକ ବହି ଲେଖିଛନ୍ତି। ମନୋରଞ୍ଜନଙ୍କ ପିତା ଡାକ୍ତର ବିନାୟକ ଅନେକ ଦିନ ଧରି ଶରଣକୁଳ ଡାକ୍ତରଖାନାରେ ଡାକ୍ତର ଥିଲେ।



ଡାକ୍ତର ସୌମିତ୍ରୀ ପାଣିଗ୍ରାହୀ
ଆବିର୍ଭାବ-୦୫।୦୨।୧୯୨୦
ତିରୋଧାନ-

ପ୍ରଖ୍ୟାତ ଶିଶୁରୋଗ ବିଶେଷଜ୍ଞ। କ୍ୟାପିଟାଲ ହାସପାତାଲରେ ଅନେକ ବର୍ଷ ଥିଲେ। ସେ ମୋର ପୁତୁରା ପ୍ରକାଶ ଚନ୍ଦ୍ର ଦୋରାଙ୍କୁ ଠିକ ଡାଇଗ୍ନୋସିସ୍ କରି ଭଲ କରିଥିଲେ।



ଡକ୍ଟର ଚନ୍ଦ୍ରଶେଖର ଷଡଙ୍ଗୀ
ଆବିର୍ଭାବ-୧୯୩୮
ତିରୋଧାନ-୦୧।୦୨।୨୦୨୨

ତାଙ୍କ ଘର ଓଡଗାଁ ପାଖ ପଞ୍ଚୁଖାଡି। ସେ ୧୯୫୪ରେ ଶରଣକୁଳ ହାଇସ୍କୁଲରୁ ମାଟ୍ରିକ ପାସ କରିଥିଲେ, ମୁଁ ସେତେବେଳେ କ୍ଲାସ viii ରେ ପଢୁଥିଲି। ସେ ବୋଟାନି ପ୍ରଫେସର ଥିଲେ ଏବଂ ପରେ ସଂସ୍କୃତ ବିଶ୍ୱବିଦ୍ୟାଳୟ କୁଳପତି ହୋଇଥିଲେ।



ଇଂ. ନଗେନ୍ଦ୍ର ନାଥ ମହାନ୍ତି
ଆବିର୍ଭାବ-୨୫।୦୨।୧୯୩୯
ତିରୋଧାନ-୦୨।୦୨।୨୦୨୨

ନଗେନ୍ଦ୍ର ମୋର କଟକ ଇଞ୍ଜିନିଅରିଂ ସ୍କୁଲ ଡିପ୍ଲୋମା କ୍ଲାସମେଟ। ମୋ ପରି ସେ A.M.I.E ପାସ୍ କରିଥିଲେ। ଜଳ ସେଚନ ବିଭାଗରେ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ।



ହରେକୃଷ୍ଣ ଦୋରା
ଆବିର୍ଭାବ-୨୯।୦୭।୧୯୩୪
ତିରୋଧାନ-୦୬।୦୨।୨୦୨୨

ହରେକୃଷ୍ଣଙ୍କ ଘର ଶରଣକୁଳ ଥାନା ବଡଗୋରଡ଼ାରେ। ହରେକୃଷ୍ଣ ସେ ମୋର ଦାଦା ହେବେ। ଲାଇଭଷ୍ଟକ ଇନ୍ସପେକ୍ଟର ହୋଇ ଚାକିରି କରିଥିଲେ। ବିଭାଗରେ ସୁନାମ ଅର୍ଜନ କରିଥିଲେ।



ଶିକ୍ଷାବିତ ପ୍ରଫେସର
Dr. ଗଣେଶ୍ୱର ଦାସ
ଆବିର୍ଭାବ-୧୯୩୩
ତିରୋଧାନ-୧୧।୦୫।୨୦୨୨

ପିତା ରାୟ ସାହେବ ଦାମୋଦର ଦାସ ଅର୍ଥ ବିଭାଗର ସେକ୍ରେଟେରି ଥିଲେ। ଗଣେଶ୍ୱର ତାଙ୍କର ଆତ୍ମଜୀବନୀ ଲେଖିଛନ୍ତି। ସେ ଦର୍ଶନ ଶାସ୍ତ୍ରରେ ଅଧ୍ୟାପକ ଥିଲେ। ଜଷ୍ଟିସ ବିଜୟ କୁମାର ରାୟଙ୍କ ଜ୍ୟେଷ୍ଠ ଜାମାତା।



ପ୍ରଶାନ୍ତ କୁମାର ରଥ
ଆବିର୍ଭାବ-୧୯୪୧
ତିରୋଧାନ-ଅପ୍ରିଲ ୨୦୨୨

ପ୍ରଶାନ୍ତ ୧୯୫୯ରେ କଟକ ଇଞ୍ଜିନିଅରିଂ ସ୍କୁଲରୁ ଡିପ୍ଲୋମା କରି, ପରେ ମାଡ୍ରାସ ରୁ A.M.I.E କରିଥିଲେ। ସେ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। ଫୁଲବାଣୀ (R+B) Dvnରେ ସେ ମୋର ସହକର୍ମୀ ଥିଲେ।



ସୁଦାମ ଚରଣ ପଟ୍ଟନାୟକ
ଆବିର୍ଭାବ-୨୯।୧୦।୧୯୩୩
ତିରୋଧାନ-୦୫।୦୫।୨୦୨୨

ମୁଁ ୧୯୮୯ରେ ନୟାଗଡ଼ରେ P.W.D S.D.O ଥିଲାବେଳେ ସେ ପୁରୀର କଲେକ୍ଟର ଥିଲେ। ସେ ଆସିଲେ ଭେଟ ହୁଏ।



ଅନନ୍ତ ପ୍ରସାଦ ମହାନ୍ତି
ଆବିର୍ଭାବ-୨୧।୧୧।୧୯୪୧
ତିରୋଧାନ-୧୩।୦୯।୨୦୦୩

ଅନନ୍ତ ଡିପ୍ଲୋମା କରି AMIE ପାସ କରିଥିଲେ। ସେ ନିର୍ବାହୀ ଯନ୍ତ୍ରୀ ପଦରୁ ଅବସର ନେଇଥିଲେ। R.E.O.କମିଟିକୁ କାଗଜପତ୍ର ଯୋଗାଇବା କାମରେ ଲିପ୍ତ ଥିଲେ। ବିଧାୟକ ତଥା ପୂର୍ବତନ ଖଦୀ କୋର୍ଟର ଚେୟାରମ୍ୟାନ ରାଜ କିଶୋର ନାୟକ ତାଙ୍କ ଶଢୁ ଅଟନ୍ତି।



ଗଙ୍ଗାଧର ମିଶ୍ର
ଆବିର୍ଭାବ: ୦୬।୦୫।୧୯୪୩
ତିରୋଧାନ: ୧୭।୦୭।୨୦୨୨

ଜନ୍ମ ପୁରୀ ଜିଲ୍ଲା। ମୁଁ ରାୟଗଡ଼ାରେ ଡେପୁଟିସନରେ ଯାଇ କାମ କରୁଥିବା ବେଳେ ସେ ଫୁଡ୍ କର୍ପୋରେସନ ଅଫ୍ ଇଣ୍ଡିଆର କ୍ୱାଲିଟ୍ ଇନ୍ସ୍‌ପେକ୍ଟର ଥିଲେ।



ଇଂ. ଶ୍ୟାମବନ୍ଧୁ ଜେନା
ଆବିର୍ଭାବ- ୫।୧।୧୯୪୩
ତିରୋଧାନ-୨।୨।୨୦୨୦

ଜଳସେଚନ ବିଭା ଗରେ ମୁଖ୍ୟଯନ୍ତ୍ରୀ ହୋଇ ଅବସର ନେଲେ। ସେ ମୋର ହିତାକାଂକ୍ଷୀ ପ୍ରାକ୍ତନ ଅଣ୍ଡର ସେକ୍ରେଟାରୀ ରାମଚନ୍ଦ୍ର ବେଉରିଆଙ୍କ ଜାମାତା। ମୋର ଶ୍ୟାମବନ୍ଧୁଙ୍କ ସହିତ ବନ୍ଧୁତା ଥିଲା।



ଇଂ. ବଟକୃଷ୍ଣ ଦାସ
ଆବିର୍ଭାବ: ୧୭।୦୯।୧୯୩୪
ତିରୋଧାନ: ୦୮।୦୮।୨୦୨୧

ବଟକୃଷ୍ଣ ମୋ କଟକ ଇଂଞ୍ଜିନିୟରିଂ ସ୍କୁଲର କ୍ଲାସମେଟ୍। ୧୯୯୨ରେ ମୁଁ ତାଙ୍କୁ ନୟାଗଡ଼ର P.W.D. ସବ୍ ଡିଭିଜନର୍ ଦାୟିତ୍ୱ ହସ୍ତାନ୍ତର କରିଥିଲି।



ଡକ୍ଟର ଆଶିଷ କୁମାର ପଟ୍ଟନାୟକ
ଆବିର୍ଭାବ: ୨୪।୧୦।୧୯୪୬
ତିରୋଧାନ: ୦୧।୦୮।୨୦୨୨

ଜନ୍ମ ମଲ୍ଲିକାଶପୁର, ବାଲେଶ୍ୱର। ସେ ଖୋର୍ଦ୍ଧା ମେଡିକାଲ ସବ୍ ଡିଭିଜନରେ କାମ କରି ଅବସର ନେଇଥିଲେ। ପରେ ଭୁବନେଶ୍ୱର ନୟାପଲ୍ଲୀରେ ରହୁଥିଲେ। ତାଙ୍କ ପାଖକୁ ଆମ ପରିବାର ଚିକିତ୍ସା ପାଇଂ. ଆସୁଥିଲେ।

---



ସାହିତ୍ୟିକ ଦେବେନ୍ଦ୍ର କୁମାର ଦାଶ
ଆବିର୍ଭାବ: ୧୯୫୪
ତିରୋଧାନ: ୨୫।୦୮।୨୦୨୨

ଜନ୍ମ ଜଗତସିଂହପୁର ଜିଲ୍ଲା। ସାହିତ୍ୟିକ। ସେ ସମ୍ପାଦନା କରିଛନ୍ତି ଫକୀର ମୋହନ ସେନାପତିଙ୍କ ଆତ୍ମଜୀବନୀ। ମୂଳ ଆତ୍ମଜୀବନୀଠାରୁ ଏହା ବହୁତ ବଡ଼ ଓ ଅନେ ତଥ୍ୟ ରହିଛି।

---



ପ୍ରଫେସର ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ
ଆବିର୍ଭାବ: ୧୪।୦୯।୧୯୪୩
ତିରୋଧାନ: ୧୧।୦୯।୨୦୨୨

ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ ମୂତ୍ରରୋଗ ବିଶେଷଜ୍ଞ ଥିଲେ। ସେ ମଧ୍ୟ ମୂତ୍ରରୋଗ ଉପରେ ଏକ ପୁସ୍ତକ ପ୍ରଣୟନ କରିଛନ୍ତି। ୧୯୭୮ ମସିହାରେ ଡାକ୍ତର ବାଲ୍ ଚନ୍ଦ୍ର ଅଗ୍ରୱାଲଙ୍କ ସହିତ ମିଶି ମୋ ବାପାଙ୍କର ପ୍ରୋଷ୍ଟେଟ୍ ଅପରେସନ କରିଥିଲେ। ସେ ଡାକ୍ତର ଚିନ୍ତାମଣି ସାହୁଙ୍କ ପୁତ୍ର। ୧୯୩୦ ମସିହାରେ ସମାଜସେବୀ ବୈରାଗୀ ମିଶ୍ରଙ୍କ ପ୍ରରୋଚନାରେ ଅନୁପ୍ରାଣିତ ହୋଇ ଏକ ବି ବରା କନ୍ୟାଙ୍କୁ ବିବାହ କରିଥିଲେ। ମନସ୍ତତ୍ତ୍ୱବିତ୍ ସ୍ୱର୍ଗତ ପ୍ରଫେସର ଡକ୍ଟର ଶାନ୍ତିଲତା ସାହୁ ଲକ୍ଷ୍ମୀକାନ୍ତଙ୍କର ଭଗ୍ନୀ ଅଟନ୍ତି।



ଇଂ ବିରେନ୍ଦ୍ର ନାଥ ପଣ୍ଡା
ଆବିର୍ଭାବ: ୧୨।୦୨।୧୯୪୧
ତିରୋଧାନ: ୧୭।୦୯।୨୦୨୨

ଜନ୍ମ ବାଲେଶ୍ୱର ଜିଲ୍ଲାରେ। ବିରେନ୍ଦ୍ର ମୋର ଇଂଜିନିୟରିଂ ସ୍କୁଲ କ୍ଲାସମେଟ୍ ତଥା ଆଠଗଡ଼ ହଷ୍ଟେଲରେ ରୁମ୍ ମେଣ୍ଟ ଥିଲା। ସେ ଏ.ଏମ୍.ଆଇ.ଇ. ପରୀକ୍ଷା ପାସ୍ କରି ଜଳସେଚନ ବିଭାଗରେ ନିର୍ବାହୀ ଯନ୍ତ୍ରୀ ରୂପେ ପଦୋନ୍ନତି ପାଇ ଅବସର ନେଇଥିଲା। ସେ ଧୀରସ୍ଥିର ସ୍ୱଭାବର ବ୍ୟକ୍ତି।



ଭଉଣୀ ମାଗୁଣି



ପଉସୀ ନାନି ମହାଲକ୍ଷ୍ମୀ





ସାନ ଭାଉଜ ନର୍ମଦା



ପୁତୁରା ପ୍ରଭାତ



ସମୁଦି-ସମୁଦୁଣୀଙ୍କ କୋଳରେ ନାତୁଣୀ ଚେତନା ଓ ମେଘନା

ସମୁଦି ଭି. ନାରାୟଣ ରାଓଙ୍କ ସହ ଲେଖକ ଏବଂ ନାତି ଶ୍ରେୟସ



ଆମେ ତିନିଭାଇ: ବାମରୁ ଗୋବର୍ଦ୍ଧନ, ମଦନମୋହନ ଓ ଦଣ୍ଡପାଣି



ଝିଅ ଚିନ୍ମୟୀର ବିବାହ ଅବସରରେ ବଡ଼ଭାଇ ମଦନମୋହନ (୨୦୦୬)



କୋଣାର୍କ ମନ୍ଦିର ପରିସରରେ ଆମ ପରିବାର



କୋଣାର୍କ ମନ୍ଦିର ପରିସରରେ ବନ୍ଧୁ ଯୁଧିଷ୍ଠିର ଶତପଥୀଙ୍କ ପରିବାର



ତିରୁପତି ଦର୍ଶନରେ ସପରିବାର (୧୯୮୬)

(ବାମରୁ) ଜ୍ୱାଇଁ ଶ୍ରୀନିବାସ, ଝିଅ ପ୍ରଣତୀ-ପ୍ରବୀଣା ଓ ଜ୍ୱାଇଁ ବିଜୟ ଭାସ୍କର



କନ୍ୟା ଚିନ୍ମୟୀ ସହ ଅମର ଏବଂ ବିପାସନା



ବଡ଼ଭାଇଙ୍କ ୯୨ବର୍ଷ ପୂର୍ତ୍ତି ଅବସରରେ ଲେଖକ



(ବାମରୁ) ସୃଷ୍ଟି, ଶ୍ରେୟସ, ମେଘନା ଓ ଚେତନା

ବଡ଼ଭାଇଙ୍କ ୯୩ ବର୍ଷ ପୂର୍ତ୍ତି ଅବସରରେ ବୋହୂ ଯମୁନା



ବାଲେୟା ଓ ଆର.ବି. ପଟ୍ଟନାୟକଙ୍କ ପରିବାର ସହ ଲାବଣ୍ୟ

(ବାମରୁ) ଚିନ୍ମୟୀ, ପ୍ରତିଭା, ଶ୍ରୀକାନ୍ତ, ସ୍ପନ୍ଦନା ଓ ପ୍ରବୀଣା



କନ୍ୟା ପ୍ରବୀଣାର ନିବାସରେ ମୋହନ ରାଓଙ୍କ ପରିବାର



ବଡ଼ଗୋରଡ଼ା ଗାଁ ସର୍ବରାକାର କ୍ଷେତ୍ରମୋହନ ମହାପାତ୍ର



ପ୍ରବୀଣାର ବିବାହ ଅବସରରେ ବଡ଼ଭାଇ, ଲେଖକ, ନୀଳମଣି, ରଣପୁର ବିଧାୟକ ରମାକାନ୍ତ ମିଶ୍ର ଏବଂ କୃଷ୍ଣଚନ୍ଦ୍ର (୧୯୯୪)

ଦଣ୍ଡଧର ନାୟକଙ୍କ
ସହ କନ୍ୟା ଅସୀମା



ପ୍ରଣତୀର ବିବାହ ଅବସରରେ ପ୍ରମୋଦ, କୃଷ୍ଣ, ଗୌରାଙ୍ଗ, ବଡ଼ଭାଇ ମଦନମୋହନ ଏବଂ ସଙ୍ଗାତ ବାଳକୃଷ୍ଣ ଦାଶ (୧୯୯୭)



ଦଣ୍ଡଧରଙ୍କ ସହ ଲେଖକ (୧୯୮୫)



ସସ୍ତ୍ରୀକ ଦଣ୍ଡଧର ନାୟକ





ତୃତୀୟ କନ୍ୟା ପ୍ରତିଭାର ପରିବାର



ଶ୍ରୀଯୁକ୍ତ ରମାକାନ୍ତ ମିଶ୍ର,
ଓଡ଼ିଶା ସରକାରଙ୍କ ପ୍ରାକ୍ତନ ମନ୍ତ୍ରୀ



ପୂଜ୍ୟ ପ୍ରଧାନ ଶିକ୍ଷକ
ରଘୁନାଥ ମିଶ୍ର



ଶରଣକୂଳ ନାରାୟଣ ଉଚ୍ଚବିଦ୍ୟାଳୟର ଶିକ୍ଷକମାନଙ୍କ ଗହଣରେ ହାଇସ୍କୁଲ ସାର୍ଟିଫିକେଟ ପରିକ୍ଷାର୍ଥୀ (୧୯୫୭)



ନୟାଗଡ଼ରେ ଅବସ୍ଥାନ କାଳରେ ହୋଲିର ପର୍ବର ଏକ ମୁହୂର୍ତ୍ତ (୧୯୮୯)



ନୟାଗଡ଼ ପି.ଡବ୍ଲୁ.ଡି. ସବ୍ ଡିଭିଜନର ବିଦାୟକାଳୀନ ଅବସରରେ (୧୯୯୨)



'Thesaurus of Events and Dates of Orissa' ପୁସ୍ତକର ଉନ୍ମୋଚନ ଅବସରରେ (ବାମରୁ) ବିଷ୍ଣୁଚରଣ ମହାନ୍ତି, ଇଂ. ନିମାଇଁ ଚରଣ ପାଣି, ଡକ୍ଟର ଜିତେନ୍ଦ୍ର ପ୍ରସାଦ ପଟ୍ଟନାୟକ, ଡକ୍ଟର ଯତିନ୍ଦ୍ର କୁମାର ନାୟକ, ଲେଖକ ଇଂ. ଗୋବର୍ଦ୍ଧନ ଦୋରା, ପ୍ରଶାନ୍ତ କୁମାର ରଥ ଏବଂ ଇଂ କାଳିଚରଣ ଦୋରା (୨୦୦୩)

ବନ୍ଧୁ ଇଂ. ବ୍ରହ୍ମାନନ୍ଦ ଦାସଙ୍କ ପୁସ୍ତକ ଉନ୍ମୋଚନ ଅବସରରେ (ବାମରୁ) ଦେବରାଜ ଦାଶ, ରାମହରି ମହାନ୍ତି, ମୃତ୍ୟୁଞ୍ଜୟ ଦାସ, ଗୋବର୍ଦ୍ଧନ ଦୋରା ଏବଂ ଦେବେନ୍ଦ୍ରନାଥ ଗିରିଙ୍କ ସହ ପାଖରେ ବସିଛନ୍ତି ପ୍ରତାପ ଚନ୍ଦ୍ର ଭୂୟାଁ (୨୦୧୭)

ଚାରିବାଟିଆରେ ଅବସ୍ଥାନ କାଳରେ ମୋର ଦୁଇ ସାହାଯ୍ୟକାରୀ ଗୋଲିଆ ଏବଂ ସନିଆ (୧୯୮୬)



ବନ୍ଧୁ ସୁଶାନ୍ତ କୁମାର ଜେନା ଏବଂ ତାଙ୍କ ଧର୍ମପତ୍ନୀ





अन्तर्देशीय पत्र कार्ड
INLAND LETTER CARD

To Shri G. Dora. Asst. Ex. Engineer,
Q. No. L-184,
Baramunda Housing Colony,
Bhubaneswar PIN 751003

SENDER'S NAME AND ADDRESS :—
D. D. Naik, HIG L/S-73,
Mahanadi Vihar, Cuttack.
PIN 753004

She wanted to come, but your Bhabi is not well.
Her blood sugar has increased. I am also not
well, carrying on so so. What can we do?
Poor girl has to suffer! Otherwise everything is
as usual. I am going to Jagatpur regularly with the
factory transport. Write me a letter at your
convenience. Hope and pray your good health
and well being of all.
With love and good wishes
Yours sincerely,
D. D. Naik

Sri

Safe

LB-73, Markandi Vihar,
Cuttack - 753 004.
Dt. 25-6-83

My dear Babu Govardhan.

Kindly accept our blessings and love and convey the same to Santosh and children. I have not heard from you since a long time. We have also not gone to Bhubaneswar. It so happens that it became very hot last month and this month there is rain everyday. We both are very anxious to meet you. How are you and all the members? Once Sri Krishna was telling me that she had been (in those) to your office and you had been to Puri. It seems now-a-days you are looking after some Project at Puri. Which one. Is it good? We are equally also anxious to know the finalisation of the marriage of Cheli.

Bishnu has already voluntarily retired from F.C.I, Kendu and he is staying in his own house near our house. You know that he also has the same house. They both were anxious also to meet you both. They were asking also about the children.

Bishnu is at New Delhi and pulling on so so. Ashima is in the village. She is not well as she is again going to be mother perhaps.

12.3.92
Hayagarh

My dear Gobardhan,
I returned yesterday from Phulbani and received your letter. Please do come with your daughter & Mrs. by 15th March to stay with us until her examination is over. We will be very happy to have your company. My wife has returned from village and may have to go back for a few days. My second daughter-in-law has arrived yesterday. My son Ramesh is joining for 6 months field training at Bhubaneswar on 14th March. He would take his wife to BBSR. My wife will return after mung (pulses) harvest. Paddy threshing is over. It would be convenient if your mrs accompanies her. My eldest son would visit us for three days during this



ଡଃ ଗୋବର୍ଦ୍ଧନ ଦୋରାଙ୍କ (୨୬ ଜୁନ୍ ୧୯୩୯) ଜନ୍ମସ୍ଥାନ ନୟାଗଡ଼ ଜିଲ୍ଲାର ବଡ଼ଗୋରଡ଼ା ଗ୍ରାମରେ । ସେ ରାଜ୍ୟ ସରକାରଙ୍କ ପୂର୍ତ୍ତ ବିଭାଗରେ ନିର୍ବାହୀ ଯନ୍ତ୍ରୀ ରୂପେ କାର୍ଯ୍ୟ କରି ଅବସର ନେଇଛନ୍ତି।

କିଛି ସ୍ମୃତି ଏବଂ ବିଭିନ୍ନ ବ୍ୟକ୍ତିଙ୍କର ମୃତ୍ୟୁ-ଲେଖ ପ୍ରକାଶ କରିବା ଏହି ସଂକଳନର ଉଦ୍ଦେଶ୍ୟ।

ସଂକଳକ

ସାରସ୍ୱତ କୃତୀ

1. The Thesaurus of Events and Dates of Orissa, 2003
2. Orissa: An Encyclopaedia of Events (Enlarged Edition of Thesaurus), 2008

୩. ଛୋଟ ମୋର ଗାଁଟି, ୨୦୦୯

୪. Orissa : An Encylopaedia of Personages, 2011

5. Place of Tourist Interest in Odisha : A Cultural Guide, 2014

୬. ଆମ ଗାଁ କଥା, ଆମ ସମୟର କଥା, ୨୦୧୮

୭. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଓଡ଼ିଶାରେ ଶିକ୍ଷାର ପ୍ରସାର, ୨୦୨୧

୮. ବ୍ୟକ୍ତି ଓ ବ୍ୟାପ୍ତି, ୨୦୨୧

୯. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଭ୍ରମଣ ବିବରଣ, ୨୦୨୧

୧୦. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଜିଲ୍ଲେ ନୟାଗଡ଼, ୨୦୨୧

୧୧. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ବ୍ୟକ୍ତିତ୍ୱ ଆବିଷ୍କାର, ୨୦୨୨

୧୨. ବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଉତ୍କଳ ସମ୍ମିଳନୀ ଓ ଅନ୍ୟାନ୍ୟ ପ୍ରସଙ୍ଗ, ୨୦୨୨

୧୩. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ଶ୍ରୀମନ୍ଦିର ଓ ଅନ୍ୟାନ୍ୟ ମନ୍ଦିର, ୨୦୨୨

୧୪. ଉନ୍ନବିଂଶ ଶତାବ୍ଦୀର ସମ୍ବାଦପତ୍ର ପୃଷ୍ଠାରୁ... ସଂସ୍କୃତି, ୨୦୨୨

ଡଃ. ଦୋରା ସାରସ୍ୱତ କୃତୀ ପାଇଁ ୨୦୧୩ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ଏବଂ ୨୦୧୫ରେ ଉତ୍କଳ ସାହିତ୍ୟ ସମାଜ ଦ୍ୱାରା ସମ୍ବର୍ଦ୍ଧିତ ହୋଇଛନ୍ତି।